# ଘୋରୁବେଲ

ଶ୍ରୀ କେଦାରନାଥ ମହାପାତ୍ର, ବି. ଏ. (ଅନର୍ସ), ଡି. ଇଡ଼.

ମୂଲ୍ୟ ଚାରି ଅଣା ମାତ୍ର

ଉତ୍କଳର ବରପୁତ୍ର, ଶିକ୍ଷା ବିଭାଗର ଡିରେକ୍ଟର

ପରମ ପୂଜାସ୍ପଦ ଭକ୍ତିଭାଜନ ଗୁରୁଦେବ

**ଶ୍ରୀଯୁକ୍ତ ଶ୍ୟାମଚନ୍ଦ୍ର ତ୍ରିପାଠୀ**, ବି. ଏସ୍-ସି.,

ବି. ଏ., ଆଇ. ଇ. ଏସ୍., ମହୋଦୟଙ୍କ

କରକମଳରେ ଭକ୍ତିର ନିଦର୍ଶନ ସ୍ୱରୂପ

ଏହି କ୍ଷୁଦ୍ର ପୁସ୍ତିକା ଖଣ୍ଡ

ଅର୍ପିତ ହେଲା ।

# ମୁଖବନ୍ଧ

ଏହି ପୁସ୍ତକଟି ୧୯୩୪ ମସିହାରେ ଆରମ୍ଭ ହୋଇଥିଲେ ମଧ୍ୟ ନାନା ଅସୁବିଧାବଶତଃ ପ୍ରକାଶିତ ହୋଇପାରି ନ ଥିଲା । ଇତି-ମଧ୍ୟରେ ଏହାର କେତୋଟି ଅଧ୍ୟାୟ ପ୍ରବନ୍ଧ ଆକାରରେ 'ସହକାର', 'ନବଭାରତ', 'ଉତ୍କଳ ସାହିତ୍ୟ' ଇତ୍ୟାଦି ମାସିକ ପତ୍ରିକାମାନଙ୍କରେ ପ୍ରକାଶିତ ହୋଇଥିଲା । ଏହି ଗ୍ରନ୍ଥ ଲେଖିବା ପାଇଁ ଭାରତ ବିଜୟୀ କଳିଙ୍ଗ ସମ୍ରାଟ୍ ଖାରବେଳଙ୍କ ଉଦୟଗିରିସ୍ଥ ବିରାଟ ଓ ଅଦ୍ୱିତୀୟ ହାତୀଗୁମ୍ଫା ଲେଖ ଏକମାତ୍ର ଅବଲମ୍ବନ । କଲିକତା ବିଶ୍ୱବିଦ୍ୟାଳୟର ପାଲି ଅଧ୍ୟାପକ ଶ୍ରୀଯୁକ୍ତ ବେଣୀମାଧବ ବରୁଆଙ୍କ **'Old Brahmi Inscriptions of Khandagiri and Udaygiri hills'** ପୁସ୍ତକ ଓ ସ୍ୱର୍ଗୀୟ କାଶୀପ୍ରସାଦ ଜୟସ୍ୱାଲଙ୍କ ଦ୍ୱାରା ପ୍ରକାଶିତ ବହୁ ଗବେଷଣା ପୂର୍ଣ୍ଣ ପ୍ରବନ୍ଧମାନଙ୍କରୁ ବହୁ ଉପାଦାନ ସଂଗ୍ରହ କରିଥିବାରୁ ମୁଁ ସେମାନଙ୍କଠାରେ ଋଣୀ । କିନ୍ତୁ ମୁଁ ସେମାନଙ୍କର ମତଗୁଡ଼ିକ ସଂପୂର୍ଣ୍ଣ ରୂପେ ଗ୍ରହଣ ନ କରି ନାନା ସ୍ଥାନରେ ମୋର ନିଜ ଗବେଷଣାପ୍ରସୂତ ସ୍ୱାଧୀନ ମତମାନ ପ୍ରକାଶ କରିଛି । ଏ ଗୁଡ଼ିକର ବିଚାର ଭାର ସୁଧୀ ପାଠକମାନଙ୍କ ଉପରେ ନିର୍ଭର କରେ ।

ମୋ ଦ୍ୱାରା ଲିଖିତ ଓ ଅପ୍ରକାଶିତ ଐତିହାସିକ ଗ୍ରନ୍ଥମାଳାର ଏହା ପ୍ରଥମ ଖଣ୍ଡ ମାତ୍ର । ଏତଦ୍‌ବ୍ୟତୀତ 'ଭୁବନେଶ୍ୱର' ତୋଷାଳିର ଇତିହାସ, 'ଖଣ୍ଡଗିରି ଓ ଉଦୟଗିରି' 'ଶୈଳଗଙ୍ଗ-ଦେବ', 'ସୋମବଂଶର ଇତିହାସ', 'ପ୍ରାଚୀନ ଉତ୍କଳ ଲେଖମାଳା'

ଏତଦ୍ଭିନ୍ନ ଅନ୍ୟୂନ କେତେକ ଉପାଦେୟ ଓ ବହୁତଥ୍ୟପୂର୍ଣ୍ଣ ପୁସ୍ତକ ଅଦ୍ୟାପି ପାଣ୍ଡୁଲିପି ଆକାରରେ ପଡ଼ି ରହିଛି । ଉତ୍କଳର ବିଦ୍ୟୋତ୍ସାହୀ ବଦାନ୍ୟ ଲୋକମାନଙ୍କର ସାହାଯ୍ୟ ଓ ସହାନୁଭୂତି ପାଇଲେ ସେଗୁଡ଼ିକ କ୍ରମଶଃ ପ୍ରକାଶ କରିବାର ପ୍ରବଳ ବାସନା ଅଛି । ସେଗୁଡ଼ିକ ମୁଦ୍ରିତ ଓ ପ୍ରକାଶିତ ହେଲେ ଉତ୍କଳର ଐତିହାସିକ ସାହିତ୍ୟ ସମୃଦ୍ଧି ହେବ ବୋଲି ମୋର ଧ୍ରୁବ ବିଶ୍ୱାସ ।

ବିନୀତ

ପ୍ରଣେତା

# ସୂଚୀ



---



ଉଦୟଗିରିର ରାଣୀହଂସପୁର



ଉଦୟଗିରିର ଗଣେଶ ଗୁମ୍ଫା

# ଖାରବେଳ

## ପ୍ରଥମ ଅଧ୍ୟାୟ

### ଚେତରାଜ ବଂଶ, ଖାରବେଳଙ୍କ ଶୈଶବ, ବାଲ୍ୟ, ଯୌବନ ଓ ଯୌବରାଜ୍ୟ

ହିମାଚଳଠାରୁ କାବେରୀ ନଦୀ ପର୍ଯ୍ୟନ୍ତ ଓ ବ୍ରହ୍ମପୁତ୍ରଠାରୁ ହିନ୍ଦୁକୁଶ ପର୍ବତ ପର୍ଯ୍ୟନ୍ତ ବିସ୍ତୃତ ବିଶାଳ ମୌର୍ଯ୍ୟ ସାମ୍ରାଜ୍ୟର ପତନ-ପରେ ଭାରତ ଇତିହାସରେ ପୁନର୍ବାର ଅନ୍ଧକାରମୟ ଯୁଗର ଆରମ୍ଭ ହେଲା । ଭାରତର ରାଜନୈତିକ ଏକତା ନଷ୍ଟ ହୋଇ ଏହା ପୁନଶ୍ଚ ବହୁ କ୍ଷୁଦ୍ର କ୍ଷୁଦ୍ର ଯୁଦ୍ଧରତ ସ୍ୱାଧୀନ ରାଜ୍ୟରେ ବିଭକ୍ତ ହେଲା । ଉତ୍ତର ପଶ୍ଚିମାଗତ ଯବନ (ଗ୍ରୀକ୍), ଶକ ପ୍ରଭୃତି ବୈଦେଶିକ ଜାତିମାନେ ଭାରତର ସ୍ୱାଧୀନତା ଅପହରଣ କରି ଏଠାରେ ନିଜ ନିଜର ପ୍ରାଧାନ୍ୟ ପ୍ରତିଷ୍ଠା କରିବାକୁ ଯତ୍ନବାନ୍ ହେଲେ । ଏପରି ଦାରୁଣ ଅବସାଦମୟ ଦୁର୍ଦ୍ଦିନରେ ପ୍ରସିଦ୍ଧ ଚେତବଂଶରେ କଳିଙ୍ଗ ଗୌରବ ଦିଗ୍‌ବିଜୟୀ ଶ୍ରୀ ଖାରବେଳ ଜନ୍ମଗ୍ରହଣ କରିଥିଲେ ।

ଅଶୋକଙ୍କ କଳିଙ୍ଗ ବିଜୟ ଫଳରେ ବୀରପ୍ରସୂ କଳିଙ୍ଗରାଜ୍ୟ ଧ୍ୱସ୍ତ ଓ ଶ୍ରୀହୀନ ହୋଇଗଲା । ଏହାର ଅଧିବାସୀମାନେ ପରାଧୀନତା ପାଶରେ ଆବଦ୍ଧ ହୋଇ ଭୀତତ୍ରସ୍ତ, ଭଗ୍ନୋତ୍ସାହ ଓ ଅବସାଦଗ୍ରସ୍ତ ହୋଇ ପଡ଼ିଥିଲେ । ଉଦ୍ଦାମ ବିଜିଗୀଷା ପରିବର୍ତ୍ତେ ଦାସମନୋଭାବ ସମଗ୍ର ଜାତିକୁ ଗ୍ରାସ କରିଥିଲା । ଦେଶରୁ ମୁକ୍ତ ଜାତିର ଆନନ୍ଦଧ୍ୱନି ଓ ବିଜୟୋତ୍ସବ ଲୁପ୍ତ ହୋଇଥିଲା । ଠିକ୍ ଏପରି ସମୟରେ ବୀରଭୂମି କଳିଙ୍ଗଜନନୀ ମୁଖରୁ ବିଷାଦ କାଳିମା ପୋଛିଦେଇ ତାର ମୁଖଶ୍ରୀ ଉଜ୍ଜ୍ୱଳ କରିବା ନିମିତ୍ତ ସତେ ଯେପରି ଖାରବେଳଙ୍କ ଅଭ୍ୟୁଦୟ ହୋଇଥିଲା ।

ଚେତ ବା ଚେଦୀ ବଂଶ ଭାରତର ଗୋଟିଏ ଲବ୍ଧପ୍ରତିଷ୍ଠ ପ୍ରାଚୀନ ରାଜବଂଶ । ଋକ୍‌ବେଦ, ମହାଭାରତ, ପୁରାଣ ଓ ବୌଦ୍ଧଗ୍ରନ୍ଥ-ମାନଙ୍କରେ ଏହି ବଂଶର ବିସ୍ତୃତ ମାହାତ୍ମ୍ୟ ଲିପିବଦ୍ଧ ହୋଇଅଛି । ଚେଦୀମାନେ ଚନ୍ଦ୍ରବଂଶୀୟ ଥିଲେ । ଋକ୍‌ବେଦର ଅଷ୍ଟମ ମଣ୍ଡଳରେ ଲିଖିତ ଦାନସ୍ତୁତିରୁ ଜଣାଯାଏ ଯେ, ଚେଦୀ-ପୁତ୍ର କଶୁ ଚୈଦ୍ୟ ଅତ୍ୟନ୍ତ ଦାନଶୀଳ ରାଜା ଥିଲେ । ସେ ଜଣେ କବିଙ୍କର ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତାଙ୍କୁ ଏକଶତ ମହିଷ ଓ ଦଶସହସ୍ର ଗାଭୀ ଦାନ କରିଥିଲେ । ମହାଭାରତରେ ଚେଦୀରାଜ ବସୁ-ଉପରିଚରଙ୍କ କୀର୍ତ୍ତିକଳାପ ଓ ଗୌରବମୟ ରାଜତ୍ୱର ଉଲ୍ଲେଖ ଅଛି । ସେ ଜନକଙ୍କ ତୁଲ୍ୟ ଜଣେ ରାଜର୍ଷି ଥିଲେ ଓ ତାଙ୍କର ପଞ୍ଚପୁତ୍ର ପାଞ୍ଚୋଟି ସ୍ୱାଧୀନ ରାଜ୍ୟ ସ୍ଥାପନ କରିଥିଲେ । * ବୌଦ୍ଧଗ୍ରନ୍ଥ 'ଚେତିୟ ଜାତକ'ରୁ

* ମହାଭାରତ ଆଦିପର୍ବ ୬୨ ଅଧ୍ୟାୟ

କଥାଯାଏ ଯେ କପିଳଦ୍ୱିଜ ତାଙ୍କର ବଂଶପୁରୋହିତ ଥିଲେ । ଜ୍ୟୋତିଷପ୍ରବର ବରାହମିହିରଙ୍କର ବୃହତ୍ ସଂହିତା ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି ଯେ, ବସୁ ଉପରିଚରଙ୍କର ଶୌର୍ଯ୍ୟ ବୀର୍ଯ୍ୟରେ ଦେବରାଜ ଇନ୍ଦ୍ର ମୁଗ୍ଧ ହୋଇ ତାଙ୍କୁ ଇନ୍ଦ୍ରଧ୍ୱଜ ନାମକ ପତାକା ଶୋଭିତ ବଂଶଦଣ୍ଡ ଅର୍ପଣ କରିଥିଲେ । ଚେଦୀରାଜ ଏହାକୁ ମହା-ସମାରୋହରେ ଗ୍ରହଣ କରିଥିଲେ ଏବଂ ଏହାର ପୂଜାଫଳରେ ସେ ପ୍ରତ୍ୟେକ ଯୁଦ୍ଧକ୍ଷେତ୍ରରେ ଜୟଶ୍ରୀମଣ୍ଡିତ ହୋଇ ବିପୁଳ ଐଶ୍ୱର୍ଯ୍ୟ ଲାଭ କରିଥିଲେ । ଶୁକ୍ତିମତୀ ନଦୀ କୂଳରେ ତାଙ୍କର ରାଜଧାନୀ ଅବସ୍ଥିତ ଥିଲା ।

ଇତିହାସପ୍ରସିଦ୍ଧ ଚେଦୀ ରାଜର୍ଷିବଂଶର ଗୋଟିଏ ଶାଖା ମୌର୍ଯ୍ୟ ରାଜତ୍ୱ କାଳରେ କଳିଙ୍ଗରେ ରାଜତ୍ୱ କରୁଥିଲେ । * ଖାରବେଳ କଳିଙ୍ଗସ୍ଥ ଚେତ ବା ଚେଦୀରାଜବଂଶର ପଞ୍ଚମ ରାଜା । ତାଙ୍କର ପୂର୍ବପୁରୁଷ ଓ ପିତାମାତାଙ୍କ ସମ୍ବନ୍ଧରେ ଇତିହାସ ନୀରବ । ଖାରବେଳ କେଉଁ ନରପତିଙ୍କର ଏକନିଷ୍ଠ ତପସ୍ୟା ବା ପୂର୍ବଜନ୍ମର ସୁକୃତଫଳ ସ୍ୱରୂପ ଜାତ ହୋଇଥିଲେ ଓ କେଉଁ ଭାଗ୍ୟବତୀ ରାଜମହିଷୀଙ୍କର ଅଙ୍କମଣ୍ଡନ କରିଥିଲେ, ତାହା ଜଣା ଯାଇନାହିଁ । ମହାମାନବ ଗୌତମ ଅପ୍ରସିଦ୍ଧ ଶାକ୍ୟବଂଶର ଗୌରବ ବୃଦ୍ଧି କଲା ପରି ଖାରବେଳ ନିଜ ଜୀବନକାଳ ମଧ୍ୟରେ ଚେତରାଜବଂଶର ସମୁଜ୍ଜ୍ୱଳ ରତ୍ନସ୍ୱରୂପ ଦେଦୀପ୍ୟମାନ ହୋଇଥିଲେ ।

---

* ରାଜର୍ଷିବଂଶକୁଳ—ବିନିସୃତ (ହାତୀଗୁମ୍ଫା ଲେଖ)

ଅତି ପ୍ରାଚୀନକାଳରୁ ଭାରତରେ ତ୍ରିକାଳଦର୍ଶୀ ମୁନି ଋଷି, ପ୍ରସିଦ୍ଧ ଗଣକ ଓ ଜ୍ୟୋତିଷୀମାନେ ରାଜକୁଳ-ସମ୍ଭୂତ ନବଜାତ ଶିଶୁର ଜନ୍ମକାଳୀନ ଲଗ୍ନ ଓ ଗ୍ରହନକ୍ଷତ୍ରମାନଙ୍କର ଅବସ୍ଥିତି ଏବଂ ଶରୀରସ୍ଥ ଲକ୍ଷଣମାନଙ୍କ ସମ୍ବନ୍ଧରେ ଆଲୋଚନା କରି ତାର ଭବିଷ୍ୟତ ଜୀବନ ସମ୍ବନ୍ଧରେ ମତ ପ୍ରକାଶ କରିବାର ପ୍ରଥା ପ୍ରଚଳିତ ଅଛି । ରାମଚନ୍ଦ୍ର, ଶ୍ରୀକୃଷ୍ଣ, ବୁଦ୍ଧ ପ୍ରଭୃତି ମହାପୁରୁଷମାନଙ୍କ ଆବିର୍ଭାବ ସମୟରେ ଜ୍ୟୋତିଷୀମାନେ ସେମାନଙ୍କର ଜୀବନ ଗୌରବମୟ, ଉଜ୍ଜ୍ୱଳ ଓ ମହୀୟାନ୍ ହେବ ବୋଲି ଭବିଷ୍ୟତ୍‌ବାଣୀ ଶୁଣାଇଥିଲେ । ନବଜାତ ଶିଶୁ ଖାରବେଳଙ୍କ ଜନ୍ମ ସମୟରେ ତାଙ୍କର ପିତା ଚିରାଚରିତ ପ୍ରଥା ଅନୁସରଣ କରି ପଞ୍ଚଜ୍ୟୋତିଷୀମାନଙ୍କୁ ନିମନ୍ତ୍ରଣ କରିଥିଲେ । ସେମାନେ ଶିଶୁର କର କପାଳ ପ୍ରଭୃତି ଅଙ୍ଗ ପ୍ରତ୍ୟଙ୍ଗରେ ଶଙ୍ଖ, ଚକ୍ର, ଧ୍ୱଜ, ମତ୍ସ୍ୟ ପ୍ରଭୃତି ପ୍ରଶସ୍ତ ଶୁଭଲକ୍ଷଣମାନ ଅବଲୋକନ ଓ ଜନ୍ମକାଳୀନ ଲଗ୍ନ ଓ ଗ୍ରହ ନକ୍ଷତ୍ରମାନଙ୍କର ଗତିବିଧି ସମ୍ବନ୍ଧରେ ଆଲୋଚନା କରି ସେ ଭବିଷ୍ୟତ ଜୀବନରେ ଜଣେ ଏକାଙ୍ଗ ଚକ୍ରବର୍ତ୍ତୀ ସମ୍ରାଟ୍ ହେବାର ସୂଚିତ କରିଥିଲେ ।[୧] ଶିଶୁର ଉଜ୍ଜ୍ୱଳ ଭବିଷ୍ୟତ ବିଷୟ ଶ୍ରବଣ କରି ରାଜଦମ୍ପତିଙ୍କର ହୃଦୟ ଅପାର ଆନନ୍ଦରେ ପୂର୍ଣ୍ଣ ହେଲା । ରାଜା ନବଜାତ ଶିଶୁର ଜାତକ କର୍ମସକଳ ମହାସମାରୋହରେ ସମ୍ପନ୍ନ କଲେ । ପୁତ୍ରଲାଭ ସମ୍ବାଦ ପ୍ରଚାରିତ ହୁଅନ୍ତେ କଳିଙ୍ଗର ପ୍ରକୃତିପୁଞ୍ଜଙ୍କ ହୃଦୟରେ ଆନନ୍ଦଲହରୀ ଖେଳିଗଲା । ଗୀତ, ନୃତ୍ୟ, ବାଦ୍ୟ, ଉତ୍ସବ, ସମାଜ ପ୍ରଭୃତିର ଅନୁଷ୍ଠାନ ଓ ପାନଭୋଜନର ବ୍ୟବସ୍ଥା

---

୧ । ପ୍ରଶସ୍ତ-ଶୁଭ-ଲକ୍ଷଣେନ ଚତୁରନ୍ତ-ରକ୍ଷଣ-ଗୁଣୋପେତେନ (ହାତୀଗୁମ୍ଫା ଲେଖ) ।

ଦ୍ୱାରା ପ୍ରଜାବର୍ଗଙ୍କର ଆନନ୍ଦବିଧାନ କରାଗଲା । ଶିଶୁଟି ରମାରମଣ ଶ୍ରୀକୃଷ୍ଣଙ୍କ ପରି ଅପୂର୍ବ ରୂପଲାବଣ୍ୟ ସମ୍ପନ୍ନ ଥିଲା । ୨ ତାହାର ହାସ୍ୟୋଜ୍ଜ୍ୱଳ ମୁଖମଣ୍ଡଳ, ତପ୍ତକାଞ୍ଚନ କାନ୍ତି ଶରୀର ଅବଲୋକନ କରି ଜନକ ଜନନୀ ସର୍ବଦା ହର୍ଷୋତ୍‌ଫୁଲ୍ଲ ଏବଂ ଦର୍ଶକବୃନ୍ଦ ମୁଗ୍ଧ ଓ ଆପ୍ୟାୟିତ ହେଉଥିଲେ । ଶୁକ୍ଳପକ୍ଷର ଶଶିକଳା ପରି କ୍ଷୁଦ୍ର ଶିଶୁର ଅଙ୍ଗସୌଷ୍ଠବ କ୍ରମଶଃ ବୃଦ୍ଧିଲାଭ କଲା । ବସନ୍ତର ମନ୍ଦମଳୟ ସ୍ପର୍ଶରେ ପ୍ରକୃତିରାଣୀ ସଂଜୀବିତ, ଶ୍ରୀମଣ୍ଡିତ ହେଲା ପରି ଶୈଶବର ମୋହନମାଧୁରୀ ବିଶାଳ ରାଜପରିବାରକୁ ବିମଳାନନ୍ଦରସରେ ଆପ୍ଲୁତ କଲା । ବାସ୍ତବିକ୍ ଶୈଶବାବସ୍ଥାହିଁ ମାନବ ଜୀବନରେ ସର୍ବାପେକ୍ଷା ସୁଖମୟ ସମୟ । ସଂସାରର ମାୟା, ମୋହ, ଶୋକ ପରିତାପ ଶିଶୁର ସରଳ ବିମଳ ଓ କୋମଳ ହୃଦୟକୁ ଅବିଳ କରି ନ ଥାଏ । ପ୍ରଣୟର ବିରାଟ କଳ୍ପନା, ସ୍ୱାର୍ଥ, ଦ୍ୱେଷ, ଲୋଭ, ଅହଙ୍କାର ପ୍ରଭୃତି ଦ୍ୱାରା ଶିଶୁର ପୂତ ହୃଦୟ କଳୁଷିତ ହୋଇ ନ ଥାଏ । ଅନନ୍ତଲୀଳାମୟଙ୍କ ସୃଷ୍ଟିର ବୈଚିତ୍ର୍ୟ ଶିଶୁ ଜୀବନରେ ବିକଶିତ ହୋଇଥାଏ । ଶିଶୁ ପାର୍ଥିବ ହେଲେ ସର୍ବଦା ମଧୁମୟ ସ୍ୱପ୍ନ ରାଜ୍ୟରେ ବିଚରଣ କରେ । ଶିଶୁ ଆନନ୍ଦର ଉତ୍ସ, ତାହାର ଦର୍ଶନ ନୟନାଭିରାମ, ତାହାର ଅସ୍ପଷ୍ଟ ଅମୃତ ବଚନ କର୍ଣ୍ଣରେ ପୀୟୂଷ ଢାଳିଦିଏ । ତାହାର ଗତି ବିଧି ଦର୍ଶକ ପ୍ରାଣରେ ଆନନ୍ଦର ଢେଉ ଖେଳାଇଦିଏ । ସେ ନିଜର ଚପଳ କ୍ରୀଡ଼ା କୌତୁକରେ ସୃଷ୍ଟିର ଅଭିନୟ କରେ । ସେଥିପାଇଁ ପ୍ରତି ଯୁଗରେ ପ୍ରତି ଦେଶରେ କବିମାନଙ୍କ ହୃଦୟରୁ ମଧୁମୟ ଶୈଶବ ସମ୍ବନ୍ଧରେ ମଧୁର ଗାନ ନିଃସୃତ ହୋଇଛି ।

---

୨ । ଶ୍ରୀକଡାର ଶରୀରବତା (ହାତୀଗୁମ୍ଫା ଲେଖ) ।

ରାଜପୁତ୍ର ଖାରବେଳ କ୍ରମଶଃ ମଧୁମୟ ଶୈଶବକାଳ ଅତିକ୍ରମ କରି ବାଲ୍ୟାବସ୍ଥାରେ ପଦାର୍ପଣ କଲେ । ବାଲ୍ୟାବସ୍ଥା ଉପନୀତ ହୁଅନ୍ତେ ପ୍ରାଚୀନ ପାରିବାରିକ ବିଧି ଅନୁଯାୟୀ ବିଦ୍ୟାଶିକ୍ଷା ଆରମ୍ଭ ହେଲା । ସୁନ୍ଦର ଶିକ୍ଷା ନିମିତ୍ତ ପ୍ରସିଦ୍ଧ ପଣ୍ଡିତମାନେ ନିଯୁକ୍ତ ହେଲେ । ତାଙ୍କର ସ୍ମୃତିଶକ୍ତି ଅତି ତୀକ୍ଷ୍ଣ ଥିଲା । ସେ ଅଳ୍ପକାଳ ମଧ୍ୟରେ ଲିଖନ, ପଠନ, ସଙ୍ଗୀତ ପ୍ରଭୃତିରେ ବିଶେଷ ବ୍ୟୁତ୍ପତ୍ତି ଲାଭ କରିଥିଲେ । ରାଜପୁତ୍ର ଉପଯୋଗୀ ନାନାପ୍ରକାର କ୍ରୀଡ଼ା କୌତୁକ ଓ ବ୍ୟାୟାମ ଶିକ୍ଷା ଫଳରେ ତାଙ୍କର ଶରୀର କ୍ରମଶଃ ସୁସ୍ଥ, ସବଳ ଓ ହୃଷ୍ଟପୁଷ୍ଟ ହେଲା । ରାଜପ୍ରାସାଦକୁ ନାନାଦେଶାଗତ ଯତି, ଋଷି ଓ ଶ୍ରମଣମାନଙ୍କର ସାହଚର୍ଯ୍ୟ ଓ ସଦୁପଦେଶ ଲାଭ ଫଳରେ ଶିଶୁର ନୈତିକ ଉନ୍ନତି ସାଧିତ ହେଲା । ବାଲ୍ୟକାଳରେ ଆଦର୍ଶ ଶିକ୍ଷାଦାନ ଦ୍ୱାରା, ଏକାଧାରରେ ତାଙ୍କର କାୟିକ, ମାନସିକ ଓ ନୈତିକ ଉନ୍ନତି ସାଧିତ ହେବାରୁ ସେ ଭବିଷ୍ୟତରେ ଜଣେ ଆଦର୍ଶ ରାଜା ହେବାକୁ ସମର୍ଥ ହୋଇଥିଲେ ।

ପ୍ରାଚୀନ ବୌଦ୍ଧ ଯୁଗରେ ରାଜପୁତ୍ର, ଧନିକ ଓ ସମ୍ଭ୍ରାନ୍ତ ସନ୍ତାନଗଣ ବାଲ୍ୟଶିକ୍ଷା ସମାପ୍ତ କରି ବହୁଦୂରବର୍ତ୍ତୀ ତକ୍ଷଶିଳା, କାଶୀ, ଶ୍ରାବସ୍ତି ପ୍ରଭୃତି ପ୍ରସିଦ୍ଧ ବିଦ୍ୟାପୀଠମାନଙ୍କର ସଦଗୁରୁମାନଙ୍କ ତତ୍ତ୍ୱାବଧାନରେ ବହୁକାଳ ରହି ସ୍ୱ ସ୍ୱ ଶିକ୍ଷା ସମାପ୍ତ କରୁଥିଲେ । କେତେକ ରାଜପୁତ୍ର ସ୍ୱ ସ୍ୱ ରାଜଧାନୀରେ ରହି ଜ୍ଞାନବୃଦ୍ଧ, ଅଭିଜ୍ଞ, ନାନା-ବିଦ୍ୟା-ବିଶାରଦ କୁଳଗୁରୁମାନଙ୍କଠାରୁ ରାଜନୀତି, ଧର୍ମନୀତି, ଯୁଦ୍ଧବିଦ୍ୟା, ସଙ୍ଗୀତ ପ୍ରଭୃତି ରାଜପଦୋପଯୋଗୀ ନାନା ବିଷୟରେ

ଜ୍ଞାନାର୍ଜନ କରି ନିଜ ନିଜର ଶିକ୍ଷା ସମାପ୍ତ କରୁଥିଲେ । ପିତାମାତା ଓ ଗୁରୁଜନମାନଙ୍କର ତତ୍ତ୍ୱାବଧାନରେ ସ୍ୱୀୟ ରାଜଧାନୀରେ ରହି ଶିକ୍ଷା ଲାଭ ବିଦେଶସ୍ଥ କୌଣସି ପ୍ରସିଦ୍ଧ ବିଦ୍ୟାପୀଠରେ ରହି ଶିକ୍ଷା ଲାଭ ଅପେକ୍ଷା ଅଧିକ ଉପଯୋଗୀ ଓ ସୁଫଳପ୍ରଦ ବୋଲି କୂଟନୀତି ବିଶାରଦ ଚାଣକ୍ୟ ନିଜ ପ୍ରସିଦ୍ଧ ଗ୍ରନ୍ଥ ଅର୍ଥ ଶାସ୍ତ୍ରରେ ଲେଖିଛନ୍ତି । ସାଧାରଣତଃ ସେ ଯୁଗର ରାଜାମାନେ ରାଜକୁମାର-ମାନଙ୍କୁ ଶିକ୍ଷା ପ୍ରଦାନ ନିମିତ୍ତ ଚାଣକ୍ୟଙ୍କ ନୀତି ଅବଲମ୍ବନ କରୁଥିଲେ । ଲଳିତବିସ୍ତର ନାମକ ବୌଦ୍ଧଗ୍ରନ୍ଥରୁ ଜଣାଯାଏ ଯେ ବୁଦ୍ଧଦେବ ବିଶ୍ୱାମିତ୍ର ନାମକ ଗୁରୁଙ୍କଠାରୁ ଶିକ୍ଷା ଲାଭ କରିଥିଲେ । କୃଷ୍ଣ ଓ ବଳରାମ ସାନ୍ଦୀପନୀ ଋଷିଙ୍କଠାରୁ ଶିକ୍ଷା ଲାଭ କରିଥିଲେ । ଭାରତ ପ୍ରସିଦ୍ଧ ସମ୍ରାଟ୍ ଅଶୋକ ମଧ୍ୟ ସ୍ୱୀୟ ରାଜଧାନୀ ପାଟଳୀ-ପୁତ୍ରରେ ରହି ନିଜର ଶିକ୍ଷା ସମାପ୍ତ କରିଥିଲେ । ଖାରବେଳଙ୍କ ଲେଖ ପାଠରୁ ଜଣାଯାଏ ଯେ, ସେ ପଞ୍ଚଦଶ ବର୍ଷଠାରୁ ଚତୁର୍ବିଂଶ ବର୍ଷ ପର୍ଯ୍ୟନ୍ତ କଳିଙ୍ଗ ରାଜଧାନୀରେ ରହି ପ୍ରବୀଣ ଜ୍ଞାନବୃଦ୍ଧ ଗୁରୁମାନଙ୍କଠାରୁ ନାନା ବିଷୟରେ ଶିକ୍ଷାଲାଭ କରିଥିଲେ । ସେ ଏହି ନଅ ବର୍ଷ ମଧ୍ୟରେ (୧) ଲେଖ (୨) ରୂପ (୩) ଗଣନା (୪) ବ୍ୟବହାର (୫) ବିଧି (୬) ଗନ୍ଧର୍ବ ବେଦ, ଧନୁର୍ବେଦ, ଯୁଦ୍ଧବିଦ୍ୟା ଓ

---

୧। ଲେଖ—ରାଜାଜ୍ଞା ପତ୍ର ଲିଖନ ପ୍ରଣାଳୀ । (୨) ରୂପ—ମୁଦ୍ରାଙ୍କନ, ମୁଦ୍ରା ନିର୍ମାଣ ଓ ବିନିମୟ ପ୍ରଣାଳୀ । (୩) ଗଣନା—ଆୟବ୍ୟୟ ସମୀକ୍ଷା (audit) । (୪) ବ୍ୟବହାର—ଶ୍ରୁତି ଓ ସ୍ମୃତିମାନଙ୍କର ଲିଖିତ ନିୟମାବଳୀ ଓ ପରମ୍ପରା ପ୍ରଚଳିତ ପ୍ରଥାନୁଯାୟୀ ବିଚାରପ୍ରଣାଳୀ । (୫) ବିଧି—ଦଣ୍ଡବିଧି (Penal Code) । କାର୍ଯ୍ୟବିଧି (Procedure Code) ରାଜ୍ୟଶାସନ (୬) ଗନ୍ଧର୍ବ ବେଦ—ସଙ୍ଗୀତ ଶାସ୍ତ୍ର । (ଅର୍ଥଶାସ୍ତ୍ର)

ଅନ୍ୟାନ୍ୟ କଳାବିଦ୍ୟାରେ ବିଶେଷ ପାରଦର୍ଶିତା ଲାଭ କରିଥିଲେ । * ବିଦ୍ୟା ଶିକ୍ଷା ସଙ୍ଗେ ସଙ୍ଗେ ନିଜର ବହୁଦର୍ଶିତା ଅଭିଜ୍ଞତା ଓ ବୈଷୟିକ ଜ୍ଞାନର ବୃଦ୍ଧି ଓ ରାଜ୍ୟ ଶାସନ ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ ନିମିତ୍ତ ସେ ରାଜ୍ୟର ମନ୍ତ୍ରୀ, ସେନାପତି, କୋଷାଧ୍ୟକ୍ଷ ଓ ସଂଗ୍ରାହକ ପ୍ରଭୃତି କର୍ମଚାରୀମାନଙ୍କର କାର୍ଯ୍ୟକଳାପ ତତ୍ତ୍ୱାବଧାନ କରୁଥିଲେ । ଯୁବରାଜ ଖାରବେଳଙ୍କ କାର୍ଯ୍ୟକୁଶଳତା ଓ ଶାସନ-ଦକ୍ଷତା ଫଳରେ କଳିଙ୍ଗ ରାଜାଙ୍କ ଦାୟିତ୍ୱ ଓ ଶ୍ରମ ଅନେକାଂଶରେ ଲାଘବ ହୋଇଥିଲା ।

ଅର୍ଥଶାସ୍ତ୍ର, ମନୁ, ଯାଜ୍ଞବଲ୍କ୍ୟ ଓ ପରାଶର ଦ୍ୱାରା ପ୍ରଣୀତ ସ୍ମୃତିଶାସ୍ତ୍ର, ପୁରାଣ, ରାମାୟଣ ଓ ମହାଭାରତ ପ୍ରଭୃତି ଗ୍ରନ୍ଥରୁ ଜଣାଯାଏ ଯେ ପୂର୍ବକାଳରେ ରାଜା ନିଜର କାର୍ଯ୍ୟକଳାପ ଯୋଗୁଁ ସମାଜରେ ସର୍ବୋଚ୍ଚ ସ୍ଥାନ ଅଧିକାର କରୁଥିଲେ । ରାଜାଙ୍କୁ ମାନବରୂପୀ ଦେବତା ମନେକରି ଲୋକମାନେ ତାଙ୍କୁ ଦେବଯୋଗ୍ୟ ଭକ୍ତି ଓ ସମ୍ମାନ ପ୍ରଦର୍ଶନ କରୁଥିଲେ । ରାଜା ପ୍ରଜାମାନଙ୍କର ଦୁଃଖ ସୁଖ, ପାପ ପୁଣ୍ୟ, ଉନ୍ନତି ଓ ଅବନତି ପାଇଁ ସମ୍ପୂର୍ଣ୍ଣରୂପେ ଦାୟୀ ଥିଲେ । ରାଜ୍ୟକୁ ବହିଃଶତ୍ରୁ ଓ ଅନ୍ତଃଶତ୍ରୁର ଆକ୍ରମଣରୁ ରକ୍ଷା, ବିପ୍ଳବ ଦମନ, ଅରାଜକତାର ଧ୍ୱଂସ ସାଧନ, ଧର୍ମରକ୍ଷା ଓ ଧର୍ମର ଅଭିବୃଦ୍ଧି, ଲଘୁକର ଆଦାୟ ଦ୍ୱାରା ପ୍ରଜାହିତକର ନାନାବିଧ କାର୍ଯ୍ୟର ଅନୁଷ୍ଠାନ, ସତ୍ୟଧର୍ମ ଓ ନ୍ୟାୟକୁ ଆଶ୍ରୟ କରି ଅପତ୍ୟ-

---

* ଲେଖ-ରୂପ-ଗଣନା-ବ୍ୟବହାର-ବିଧି ବିଶାରଦେନ, । ସବବିଦାବଦାତେନ-ଗୁଥ । ( ହାତୀଗୁମ୍ଫା ଲେଖ )

ନିର୍ବିଶେଷରେ ପ୍ରଜାପାଳନ ଦୁର୍ଭିକ୍ଷ, ବନ୍ୟା, ଭୂକମ୍ପ, ଅଗ୍ନିକାଣ୍ଡ ପ୍ରଭୃତି ଦୈବୀ ବିପତ୍ତିରେ ଯଥୋଚିତ ପ୍ରତିକାର ବିଧାନ ରାଜାଙ୍କର ପ୍ରଧାନ କର୍ତ୍ତବ୍ୟ ଥିଲା । ପ୍ରଜାମାନଙ୍କୁ ଶୋଷଣ, ପୀଡ଼ନ, ଦମନ, ଧର୍ଷଣ ଏବଂ ଭୋଗବିଳାସରେ ରାଜବିଭବର ବ୍ୟୟ, ରାଜଧର୍ମ ବିରୁଦ୍ଧ ଥିଲା । ପ୍ରଜାରଞ୍ଜନ ରାଜାଙ୍କର ପ୍ରଧାନ ଧର୍ମ ଥିଲା ଏବଂ ଏହାଦ୍ୱାରାହିଁ ଐହିକ, ପାରତ୍ରିକ ସୁଖ ଓ ମୁକ୍ତିଲାଭ କରିବା ଧାରଣା ସେମାନଙ୍କର ହୃଦୟରେ ବଦ୍ଧମୂଳ ଥିଲା । ଯୁବରାଜ ଖାରବେଳ ପ୍ରାଚୀନ ଯୁଗର ଏହି ମହତ୍ ରାଜାଦର୍ଶ ଅନୁସରଣ କରି କଳିଙ୍ଗ ଜନନୀର ମୁଖ ଉଜ୍ଜ୍ୱଳ କରିଥିଲେ ଏବଂ ପରାଧୀନ କଳିଙ୍ଗବାସୀଙ୍କ ହୃଦୟରେ ନବୀନ ବଳ, ସାହସ ଓ ଉତ୍ସାହ ସଞ୍ଚାର କରିଥିଲେ ।

---

## ଦ୍ୱିତୀୟ ଅଧ୍ୟାୟ

## ରାଜ୍ୟାଭିଷେକ, ରାଜତ୍ୱ ଓ ଭାରତବିଜୟ

ଖାରବେଳଙ୍କୁ ଚତୁର୍ବିଂଶତି ବର୍ଷ ବୟସରେ ତାଙ୍କର ପିତା ଇହଧାମ ତ୍ୟାଗ କରିଥିଲେ । ଜ୍ୟୋତ୍ସ୍ନାବିଧୌତ ପୂର୍ଣ୍ଣିମା ରଜନୀରେ ପୂର୍ଣ୍ଣ ଚନ୍ଦ୍ରଗ୍ରହଣ ପୃଥିବୀକୁ ଅନ୍ଧକାରାଚ୍ଛନ୍ନ କଲା ପରି କଳିଙ୍ଗର ସର୍ବାଙ୍ଗୀନ ଉନ୍ନତି ବିଧାୟକ ବୃଦ୍ଧ ରାଜାଙ୍କର ମୃତ୍ୟୁରେ ରାଜ୍ୟରେ ବିଷାଦର ତାମସୀଛାୟା ଘୋଟିଗଲା । କଳିଙ୍ଗର ପ୍ରକୃତିପୁଞ୍ଜ ଗଭୀର ଶୋକରେ ଅଭିଭୂତ ହେଲେ । କିନ୍ତୁ ପ୍ରଜାବର୍ଗଙ୍କର ଏ ଦୁଃଖ ବହୁଦିନ ସ୍ଥାୟୀ ହେଲା ନାହିଁ । ଶୋକସନ୍ତପ୍ତ ଖାରବେଳ ନିଜର

ପଦମର୍ଯ୍ୟାଦା ଅକ୍ଷୁଣ୍ଣ ରଖିବା ପାଇଁ ପିତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ମହାସମାରୋହରେ ସମ୍ପର୍ଣ୍ଣ କରିଥିଲେ । ରାଜ୍ୟର ନିରନ୍ନ, ଦରିଦ୍ର, ସମ୍ବଳହୀନ କାଙ୍ଗାଳମାନଙ୍କୁ ଭୂରି ଭୋଜନ, ଅର୍ଥ ଓ ବସ୍ତ୍ର ପ୍ରଦତ୍ତ ହୋଇଥିଲା । ପାନ ଭୋଜନ ଓ ବିପୁଳ ଅର୍ଥଦାନ ଦ୍ୱାରା ବ୍ରାହ୍ମଣ, ଜୈନ ଓ ବୌଦ୍ଧ ଶ୍ରମଣମାନଙ୍କର ତୁଷ୍ଟି ବିଧାନ କରା ହୋଇଥିଲା ।

ପିତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ସମାପନ ପରେ ଖାରବେଳଙ୍କ ରାଜ୍ୟାଭିଷେକ ଉତ୍ସବ ପାଇଁ ଗଣକ ଓ ଜ୍ୟୋତିଷୀମାନଙ୍କ ଦ୍ୱାରା ଶୁଭଦିନ ନିର୍ଦ୍ଦିଷ୍ଟ ହୋଇଥିଲା । ଖାରବେଳ ଜୈନଧର୍ମାବଲମ୍ବୀ ହେଲେ ମଧ୍ୟ ପରମ୍ପରା ଅନୁସୃତ ପ୍ରାଚୀନ ବୈଦିକ ବିଧିବିଧାନ ଅନୁଯାୟୀ ନିର୍ଦ୍ଦିଷ୍ଟ ଦିବସରେ ତାଙ୍କର ଅଭିଷେକ-ଉତ୍ସବ ବହୁ ଆଡ଼ମ୍ବର ସହକାରେ ରାଜଧାନୀ କଳିଙ୍ଗ ନଗରରେ ଅନୁଷ୍ଠିତ ହୋଇଥିଲା । ଉକ୍ତ ଦିବସ ରାଜ୍ୟର ସର୍ବାଞ୍ଚଳରେ ଆନନ୍ଦର ସ୍ରୋତ ପ୍ରବାହିତ ହେବାକୁ ଲାଗିଲା । ରାଜ୍ୟର ଦେବାୟତନ, ମଠ, ବିହାର, ଚୈତ୍ୟମାନଙ୍କରେ ରାଜାଙ୍କର ଭବିଷ୍ୟତ ଶୁଭ ପାଇଁ ସମଗ୍ର ଦିବସ ସ୍ୱସ୍ତି ବାଚନ, ପୂଜା, ଆରାଧନା, ପ୍ରାର୍ଥନା ହୋଇଥିଲା । ଏହି ପବିତ୍ର ଦିବସରେ ରାଜ୍ୟର ପ୍ରତ୍ୟେକ ନଗର ଓ ଗ୍ରାମରେ ନାନାପ୍ରକାର ଉତ୍ସବ ଓ ସମାଜ ଅନୁଷ୍ଠିତ ହେଲା । ରାଜାଦେଶରେ ନିଃସ୍ୱ, ପୌର ଓ ଜାନପଦମାନଙ୍କ ମଧ୍ୟରେ ବିପୁଳ ଅର୍ଥ ବଣ୍ଟନ କରାଯାଇଥିଲା । ଉକ୍ତ ମଙ୍ଗଳ କାର୍ଯ୍ୟକୁ ସ୍ମରଣୀୟ କରିବା ପାଇଁ ପ୍ରଜାମାନଙ୍କୁ ନାନାବିଧ କର ଓ ପଣ୍ୟରୁ ଅବ୍ୟାହତି ଦିଆଗଲା । ସାମନ୍ତ ଓ ମହା ସାମନ୍ତ ଶ୍ରେଣୀ, ମାଣ୍ଡଳିକ ପ୍ରଭୃତି ଅନୁଗତ ଶାସକବୃନ୍ଦ ଓ

ବିଶିଷ୍ଟ ରାଜକର୍ମଚାରୀମାନେ ନାନାବିଧ ଉପାଧିରେ ଭୂଷିତ ଓ ବନ୍ଧୁ-
ଭାବରେ ରାଜାନୁଗ୍ରହ ଲାଭ କରିଥିଲେ । ଅଭିଷେକୋତ୍ସବ ସମାପନ
ପରେ କଳିଙ୍ଗ ସମ୍ରାଟ୍ ଖାରବେଳ ଶାସନ ଦଣ୍ଡ ସ୍ୱହସ୍ତରେ ଗ୍ରହଣ
କରି ଗୁରୁଦାୟିତ୍ୱ ପୂର୍ଣ୍ଣ ନାନାବିଧ ବିପଦର ଆଧାର ରାଜ୍ୟ-ଶାସନ
କାର୍ଯ୍ୟ ଆରମ୍ଭ କଲେ ।

ହାତୀଗୁମ୍ଫା ଲେଖରୁ କଳିଙ୍ଗ ସମ୍ରାଟ ଖାରବେଳଙ୍କର
ଚତୁର୍ବିଂଶତି ବର୍ଷ ବୟସଠାରୁ ସପ୍ତତ୍ରିଂଶ ବର୍ଷ ବୟସ ପର୍ଯ୍ୟନ୍ତ
ଚତୁର୍ଦ୍ଦଶ ବର୍ଷ ରାଜତ୍ୱର ବୃତ୍ତାନ୍ତ ମିଳେ । ସେ ଏହି କ୍ଷୁଦ୍ର ରାଜତ୍ୱ-
କାଳ ମଧ୍ୟରେ ଶତ ଶତ ଗୁମ୍ଫା, ବାପୀ, ତଡ଼ାଗ, ଉଦ୍ୟାନ, ମନ୍ଦିର,
ଗୋପୁର, ପ୍ରାସାଦ ପ୍ରଭୃତି କରାଇଥିଲେ ମଧ୍ୟ ଭାରତ ବିଜୟ ତାଙ୍କ
ରାଜତ୍ୱର ପ୍ରଧାନ ଘଟଣା । ଖାରବେଳଙ୍କ ଦିଗ୍‌ବିଜୟ ବୃତ୍ତାନ୍ତ
ଆଲୋଚନା କଲେ ମନେ ହୁଏ ଯେ ସେ ଗ୍ରୀକ୍ ବୀର ଅଲେକଜାଣ୍ଡର,
ରୋମୀୟ ବିଜେତା ସିଜର୍, ବିଶ୍ୱବିଜୟୀ ନେପୋଲିୟନ, ମୌର୍ଯ୍ୟ
ସମ୍ରାଟ ଚନ୍ଦ୍ରଗୁପ୍ତ, ଭାରତ ବିଜୟୀ ସମୁଦ୍ରଗୁପ୍ତ ଓ ମୋଗଲବାଦସା
ଅକବର ପ୍ରଭୃତି ପୃଥିବୀର ବରେଣ୍ୟ ବୀରାଗ୍ରଣୀମାନଙ୍କ ସହିତ
ଆସନ ଲାଭ କରିବାପାଇଁ ସର୍ବଥା ଉପଯୁକ୍ତ । ସୁଦୂର ସମାନ
ଅତୀତର ତାଙ୍କର ବିଜୟ ସ୍ମୃତି ସକଳ ବିଷୟରେ ଚିନ୍ତା କଲେ
ମନରେ ଅପାର ଆନନ୍ଦ, ଗର୍ବ ଓ ଗୌରବ, ହୃଦୟରେ ନବୀନ
ବଳ, ସାହସ ଓ ଉତ୍ତେଜନାର ସଞ୍ଚାର ହୁଏ । ତାଙ୍କର ବୀରତ୍ୱ ଗାଥା
ପତିତ, ପଦାନତ, ଅବସନ୍ନ ଓ ଛିନ୍ନଭିନ୍ନ ଓଡ଼ିଆ ଜାତିର
ମୃତସଞ୍ଜୀବନୀ ସୁଧା ।

ଅଭିଷିକ୍ତ ହେବା ମାତ୍ରେ ପ୍ରଥମେ ଖାରବେଳ ସ୍ୱୀୟ ରାଜଧାନୀ କଳିଙ୍ଗ ନଗରର ଜୀର୍ଣ୍ଣ ସଂସ୍କାର ଓ ଶ୍ରୀବୃଦ୍ଧି ସାଧନ ପାଇଁ ଯତ୍ନବାନ୍ ହେଲେ । ତାଙ୍କ ରାଜତ୍ୱ ପୂର୍ବରୁ ପ୍ରବଳ ପ୍ରଭଞ୍ଜନ ଓ ଧାରାପାତ ଦ୍ୱାରା କଳିଙ୍ଗ ନଗରର ଅନେକ ଗୋପୁର, ପ୍ରାକାର, ନିବେଶନ ପ୍ରଭୃତି ନଷ୍ଟ ହୋଇଥିଲା । ପୁଷ୍କରିଣୀ ଓ ପ୍ରଣାଳୀଗୁଡ଼ିକର ବନ୍ଧ ଭାଙ୍ଗି ଯାଇଥିଲା; ଉଦ୍ୟାନ ସକଳ ଧ୍ୱସ୍ତ ବିଧ୍ୱସ୍ତ ହୋଇଥିଲା । ସେ ସିଂହାସନ ଆରୋହଣ କରିବା ପରେ ପଞ୍ଚତ୍ରିଂଶ ଲକ୍ଷ ମୁଦ୍ରା ବ୍ୟୟ କରି ଭଗ୍ନ ପ୍ରାସାଦ, ଉଦ୍ୟାନ ଓ ବନ୍ଧମାନ ପୁନଃନିର୍ମାଣ କରିଥିଲେ । ସ୍ୱୀୟ ରାଜଧାନୀର ଜୀର୍ଣ୍ଣସଂସ୍କାର କାର୍ଯ୍ୟ ସମାପନାନ୍ତେ ସେ ମାନ୍ଧାତା, ପୃଥୁ, ଭରତ, ଭଗୀରଥ, ରଘୁ ପ୍ରଭୃତି ପ୍ରାଚୀନ ଦିଗ୍‌ବିଜୟୀ ନୃପତିମାନଙ୍କ ପରି ଆସମୁଦ୍ର-କ୍ଷିତି-ଅଧୀଶ୍ୱର ହେବାର ଅଭିଳାଷ ପୂରଣ କରିବା ପାଇଁ ବିପୁଳ ଆୟୋଜନ କଲେ । ଏହି ଉଦ୍ଦେଶ୍ୟରେ ସେ ରାଜଧାନୀରେ ଅସଂଖ୍ୟ ସୈନ୍ୟ, ବିପୁଳ ଅସ୍ତ୍ରଶସ୍ତ୍ର ଓ ଖାଦ୍ୟ ସମ୍ଭାର, ଶତ ଶତ ଯାନ ବାହନ ସଂଗ୍ରହ କରିଥିଲେ । ଅନ୍ତର୍ବିପ୍ଲବ, ଅରାଜକତା ଓ ବାହ୍ୟଶତ୍ରୁର ଆକ୍ରମଣରୁ ଦେଶକୁ ରକ୍ଷା କରିବାପାଇଁ କଳିଙ୍ଗର କେନ୍ଦ୍ରସ୍ଥାନ ଓ ଉପାନ୍ତ ଅଞ୍ଚଳରେ ସୈନ୍ୟ ସମାବେଶ କରାଗଲା । ଦେଶରକ୍ଷାର ସମସ୍ତ ସୁବ୍ୟବସ୍ଥା କରି ସେ ପୁରାଣପ୍ରସିଦ୍ଧ ନୃପତିମାନଙ୍କର ପଦାଙ୍କ ଅନୁସରଣ ପୂର୍ବକ ଦିଗ୍‌ବିଜୟରେ ବହିର୍ଗତ ହେଲେ ।

ଖାରବେଳଙ୍କ ରାଜତ୍ୱ ପୂର୍ବରୁ ମହାରାଷ୍ଟ୍ର ପ୍ରଦେଶରେ ଅନ୍ଧ୍ର, ସାତବାହନ ବଂଶୀୟ ରାଜାମାନେ ବିଶେଷ କ୍ଷମତାଶାଳୀ ହୋଇ

ସମଗ୍ର ଦାକ୍ଷିଣାତ୍ୟରେ ନିଜର କ୍ଷମତା ଓ ପ୍ରଭାବ ବିସ୍ତାର କରି-ଥିଲେ । ପ୍ରାୟ ଖ୍ରୀ: ପୂ: ୨୩୦ ଅବ୍ଦରେ ସିମୁକ ଏହି ବଂଶ ପ୍ରତିଷ୍ଠା କରିଥିଲେ । ଏହି ବଂଶର ତୃତୀୟ ରାଜା, ସିମୁକଙ୍କର ପୁତ୍ର ଓ ନୟନିକାଙ୍କର ସ୍ୱାମୀ ଶ୍ରୀ ସାତକର୍ଣ୍ଣୀ ଖାରବେଳଙ୍କର ସମସାମୟିକ ଥିବାର ଐତିହାସିକମାନେ ସ୍ଥିର କରିଅଛନ୍ତି । ସେ ସମଗ୍ର ଦକ୍ଷିଣାପଥର ଅଧିପତି ଥିଲେ । ଗୋଦାବରୀ ନିକଟବର୍ତ୍ତୀ 'ପୈଥାନ' ବା 'ପ୍ରତିଷ୍ଠାନ' ତାଙ୍କର ରାଜଧାନୀ ଥିଲା । ନାସିକ ଶିଳାଲିପିରୁ ଜଣାଯାଏ ଯେ, ଅସିକ, ଅସକ, ମୂଳକ, ସୁରାଷ୍ଟ୍ର, କୁକୁର, ଅପରାନ୍ତ, ଅନୁପ, ବିଦର୍ଭ, ଆକର ଓ ଅବନ୍ତୀ ପ୍ରଭୃତି ରାଜ୍ୟମାନ ତାଙ୍କର ଅଧୀନ ଥିଲା । ଏ ସମସ୍ତ ରାଜ୍ୟର ଭୌଗୋଳିକ ଅବସ୍ଥିତି ଆଲୋଚନା କଲେ ଜଣାଯାଏ ଯେ, ଆଧୁନିକ ମଧ୍ୟପ୍ରଦେଶର ପଶ୍ଚିମାଂଶ, ବମ୍ବେ ପ୍ରଦେଶର ଉତ୍ତରାଂଶ ଓ ହାଇଦ୍ରାବାଦ ରାଜ୍ୟର ଅଧିକାଂଶ ଶ୍ରୀ ସାତକର୍ଣ୍ଣୀଙ୍କ ଶାସନାଧୀନ ଥିଲା । ତେଣୁ ଶ୍ରୀ ସାତକର୍ଣ୍ଣୀ ଯେ ଦାକ୍ଷିଣାତ୍ୟର ଜଣେ ପ୍ରସିଦ୍ଧ ନରପତି ଥିଲେ ଏଥିରେ ସନ୍ଦେହ ନାହିଁ । ଅଶୋକଙ୍କ ମୃତ୍ୟୁ ପରେ ଦାକ୍ଷିଣାତ୍ୟରେ ଅନ୍ଧ୍ର ଓ କଳିଙ୍ଗ ରାଜ୍ୟ ପୁନର୍ବାର ସ୍ୱାଧୀନ ହୋଇ ରାଜ୍ୟବୃଦ୍ଧି ଓ କ୍ଷମତା ବିସ୍ତାର ପାଇଁ ପରସ୍ପର ସହିତ ବାରମ୍ବାର ଯୁଦ୍ଧରେ ପ୍ରବୃତ୍ତ ହେଉଥିଲେ । ଅନ୍ଧ୍ର ସାତବାହନ ଓ ଚେତ ମେଘବାହନ ବଂଶ ମଧ୍ୟରେ ବୈରଭାବ ପ୍ରବଳ ଥିଲା । ଗୋଦାବରୀ ନଦୀ ଉଭୟ ରାଜ୍ୟର ନୈସର୍ଗିକ ସୀମା ଥିଲା । ଖାରବେଳ ରାଜତ୍ୱର ଦ୍ୱିତୀୟ ବର୍ଷରେ ନର-ଗଜ-ହୟ-ରଥ ବିଶିଷ୍ଟ ବିରାଟ ଚତୁରଙ୍ଗ ବଳ ପଶ୍ଚିମଦିଗକୁ ପରିଚାଳନ କଲେ ଏବଂ ନିଜର ରାଜ୍ୟ ଓ ବଂଶମର୍ଯ୍ୟାଦା ବୃଦ୍ଧି ନିମିତ୍ତ

ଗୋଦାବରୀ ନଦୀ ଅତିକ୍ରମ କରି ଅତର୍କିତ ଭାବରେ ଶ୍ରୀସାତକର୍ଣ୍ଣୀଙ୍କ ରାଜ୍ୟ ଆକ୍ରମଣ କରି ତାଙ୍କୁ ପରାସ୍ତ କରିଥିଲେ ।

ସାତକର୍ଣ୍ଣୀଙ୍କୁ ପରାସ୍ତ କରି ଖାରବେଳ ଅନ୍ଧ୍ର ସମ୍ରାଟର ପ୍ରଧାନ ରାଜ୍ୟ ଅସିକ (ଅସକ) ବିରୁଦ୍ଧରେ ଅଭିଯାନ ଚଳାଇଥିଲେ । ଅସିକ (ଅସକ) ବା ପ୍ରାଚୀନ ଅସ୍ମକ ରାଜ୍ୟ ଗୋଦାବରୀ ନଦୀକୂଳରେ ଅବସ୍ଥିତ ଥିଲା ଓ ପୋତନ (ପତ୍ତନ) ଏହାର ରାଜଧାନୀ ଥିଲା । କଳିଙ୍ଗ ଓ ଅସ୍ମକ ରାଜ୍ୟ ମଧ୍ୟରେ ଖାରବେଳଙ୍କ ରାଜତ୍ୱର ବହୁ ପୂର୍ବରୁ ଶତ୍ରୁତା ଥିଲା ଓ ଉଭୟ ରାଜ୍ୟ ମଧ୍ୟରେ ମଧ୍ୟେ ମଧ୍ୟେ ଯୁଦ୍ଧ ବିଗ୍ରହ ହେଉଥିଲା । ଖାରବେଳ ଉକ୍ତ ରାଜ୍ୟ ଆକ୍ରମଣ କରିବାରୁ ଉଭୟ ରାଜ୍ୟ ମଧ୍ୟରେ ଭୀଷଣ ଯୁଦ୍ଧ ଆରମ୍ଭ ହେଲା । ପ୍ରଥମେ ସେ ଉକ୍ତ ରାଜ୍ୟ ଜୟ କରିବା ପାଇଁ ସମର୍ଥ ହୋଇ ନ ଥିଲେ । ତେଣୁ କଳିଙ୍ଗରୁ ତାଙ୍କୁ ସାହାଯ୍ୟ ଦେବାପାଇଁ ପୁନର୍ବାର ଦଳେ ସେନା ପ୍ରେରିତ ହୋଇଥିଲେ । ଏହା ସାହାଯ୍ୟରେ ଶେଷରେ ଖାରବେଳ ଜୟଲାଭ କଲେ ଓ ଉକ୍ତ ରାଜ୍ୟ ତାଙ୍କର ଅଧୀନତା ସ୍ୱୀକାର କଲା । ଏହି ରାଜ୍ୟର ପତନ ପରେ ଅନ୍ଧ୍ର ସମ୍ରାଟ୍ ସାତକର୍ଣ୍ଣୀ ଖାରବେଳଙ୍କ ଅଧୀନତା ସ୍ୱୀକାର କରିଥିଲେ ।

ଏହା ପରେ ବିଜୟମଦମତ୍ତ ଖାରବେଳ ସ୍ୱୀୟ ରାଜଧାନୀ କଳିଙ୍ଗ ନଗରକୁ ଫେରିଆସି ଉତ୍ସବ, ସମାଜ ପ୍ରଭୃତି ଅନୁଷ୍ଠାନ ଓ ଗୀତ, ନୃତ୍ୟ, ବାଦ୍ୟ ଇତ୍ୟାଦିର ସନ୍ଦର୍ଶନ ଦ୍ୱାରା ସ୍ୱୀୟ ପ୍ରଜାମାନଙ୍କର ଚିତ୍ତବିନୋଦନ କରିଥିଲେ । ରାଜତ୍ୱର ତୃତୀୟ ବର୍ଷ ସେ ଆମୋଦ ପ୍ରମୋଦରେ କଟାଇଥିଲେ । କିନ୍ତୁ ଦାକ୍ଷିଣାତ୍ୟର ସମସ୍ତ

ରାଜ୍ୟ ଜୟ କରି ନ ଥିବାରୁ ସେ ସୁଖ ଶାନ୍ତିରେ କାଳ କଟାଇ ପାରିଲେ ନାହିଁ । ତାଙ୍କର ପ୍ରବଳ ବିଜୟେଚ୍ଛା ପୂର୍ଣ୍ଣ କରିବା ପାଇଁ ସେ ରାଜତ୍ୱର ଚତୁର୍ଥ ବର୍ଷରେ ରାଷ୍ଟ୍ରିକ ଓ ଭୋଜକମାନଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା କରିଥିଲେ । ରାଷ୍ଟ୍ରିକ ଓ ଭୋଜକମାନେ ଆଧୁନିକ ମଧ୍ୟପ୍ରଦେଶର ପଶ୍ଚିମାଞ୍ଚଳରେ ନର୍ମଦା ନଦୀ କୂଳବର୍ତ୍ତୀ ପ୍ରଦେଶରେ ବାସ କରୁଥିଲେ । ଅଶୋକଙ୍କ ରାଜତ୍ୱରେ ଏମାନେ ପରାକ୍ରମଶାଳୀ ଥିବାର ତାଙ୍କର ଶିଳାଲେଖମାନଙ୍କରୁ ଜଣାଯାଏ । ଏମାନଙ୍କୁ ପରାସ୍ତ କରିବା ଫଳରେ ଦାକ୍ଷିଣାତ୍ୟର ଅଧିକାଂଶ ତାଙ୍କର ପଦାନତ ହେଲା । ତାଙ୍କର ଦାକ୍ଷିଣାତ୍ୟ ବିଜୟ ଫଳରେ ନବୋତ୍ଥିତ ଅନ୍ଧ୍ର ସାତବାହନ ବଂଶର କ୍ଷମତା କିଛିକାଳ ପାଇଁ ହ୍ରାସଲାଭ କରିଥିଲା ।

ରାଜତ୍ୱର ପଞ୍ଚମ, ଷଷ୍ଠ ଓ ସପ୍ତମ ବର୍ଷରେ ସେ କୌଣସି ଦେଶ ଜୟ କରିବାପାଇଁ ଯାଇ ନ ଥିଲେ । ଇତିମଧ୍ୟରେ ସେ ଦାକ୍ଷିଣାତ୍ୟ ବିଜୟ ପରେ ସମଗ୍ର ଉତ୍ତରଭାରତ ଜୟ କରିବାପାଇଁ ସକଳ ପ୍ରକାର ଆୟୋଜନ କରିଥିଲେ । ସେ ସମୟରେ ମଗଧ ରାଜ୍ୟ ସମଗ୍ର ଭାରତବର୍ଷରେ ଧନ, ଜନ ଓ ଶକ୍ତିରେ ଶୀର୍ଷସ୍ଥାନ ଅଧିକାର କରିଥିଲା । ତାଙ୍କ ରାଜତ୍ୱର କେତେକ ବର୍ଷ ପୂର୍ବେ ଖ୍ରୀଷ୍ଟପୂର୍ବ ୨୬୧ ଅବ୍ଦରେ ମଗଧାଧିପତି ଭାରତ ସମ୍ରାଟ୍ ଅଶୋକ ପୃଥିବୀବିଖ୍ୟାତ କଳିଙ୍ଗ ଯୁଦ୍ଧରେ ତାଙ୍କର ପୂର୍ବପୁରୁଷଙ୍କୁ ପରାସ୍ତ କରି କଳିଙ୍ଗର ସ୍ୱାଧୀନତା ଅପହରଣ କରିଥିଲେ । ସେହି ଅପମାନର ଭୀଷଣ ପ୍ରତିଶୋଧ ନେବା ନିମିତ୍ତ ସେ ସମସାମୟିକ ଅଙ୍ଗ ମଗଧ ରାଜ୍ୟର

ଅଧିପତି ମୌର୍ଯ୍ୟବଂଶୀୟ ବୃହସ୍ପତି ମିତ୍ରଙ୍କୁ ପରାସ୍ତ କରି ଉକ୍ତ ରାଜ୍ୟକୁ ପଦାନତ କରିବାପାଇଁ ଦୃଢ଼ପ୍ରତିଜ୍ଞ ହୋଇଥିଲେ ।

ମଗଧ ରାଜ୍ୟରେ ବହିର୍ଗତ ହେବା ପୂର୍ବରୁ ସେ ରାଜତ୍ୱର ସପ୍ତମ ବର୍ଷରେ ନିଜର ସାମରିକ ଶକ୍ତି ବୃଦ୍ଧି କରିବାପାଇଁ ଅସି, ଛତ୍ର, ଧ୍ୱଜ, ରଥୀ, ତୁରଙ୍ଗ, ହସ୍ତୀ ଓ ରଥ ପ୍ରଭୃତିର ସଂଖ୍ୟା ବୃଦ୍ଧି କରିଥିଲେ । ମଗଧ ଅଭିଯାନପାଇଁ ବିପୁଳ ସୈନ୍ୟ ସମାବେଶ ଓ ଅସ୍ତ୍ର ଶସ୍ତ୍ର ସଜ୍ଜା ଆରମ୍ଭ ହେଲା । ସେ ରାଜତ୍ୱର ଅଷ୍ଟମ ବର୍ଷରେ ବିଶାଳ ଚତୁରଙ୍ଗ ବାହିନୀ ସହ ମଗଧ ଅଭିଯାନରେ ବହିର୍ଗତ ହେଲେ; କିନ୍ତୁ ସେ କଳିଙ୍ଗରୁ ହଠାତ୍ ମଗଧକୁ ଦକ୍ଷିଣ ଦିଗରୁ ଆକ୍ରମଣ ନ କରି ମଥୁରା ଅଭିମୁଖରେ ଯାତ୍ରା କଲେ । ସେ ଦକ୍ଷିଣ କୋଶଳ ( ଆଧୁନିକ ସମ୍ବଲପୁର ରାଯ୍ପୁର ଅଞ୍ଚଳ ) ଚେଦୀ-ରାଜ୍ୟ ( ଜବଲପୁର ଅଞ୍ଚଳ ) ଓ ଉତ୍ତର କୋଶଳ ( ଯୁକ୍ତ ପ୍ରଦେଶର ପୂର୍ବାଂଶ ) ଅତିକ୍ରମ କରି ମଥୁରା ଅବରୋଧ କରିଥିବା ସମ୍ଭବପର । ପଥ ପାର୍ଶ୍ୱବର୍ତ୍ତୀ ରାଜ୍ୟମାନ ତାଙ୍କର ପ୍ରବଳ ଶକ୍ତିକୁ ପ୍ରତିରୋଧ କରିବା ପାଇଁ ସମର୍ଥ ହୋଇ ନ ଥିଲେ । କାରଣ ସେ ବର୍ଷକ ମଧ୍ୟରେ ମଥୁରା ଅଧିକାର କରି ମଗଧ ଆକ୍ରମଣ ସମାପ୍ତ କରିଥିଲେ । ସେମାନଙ୍କର ପ୍ରତିରୋଧ ପ୍ରବଳ ହୋଇଥିଲେ ଏହା ସମ୍ଭବପର ହୋଇ ନ ଥାନ୍ତା ।

ମଥୁରା ଯମୁନା ନଦୀ କୂଳରେ ଅବସ୍ଥିତ ଓ ଖାରବେଳଙ୍କ ସମୟରେ ଏହା ଉତ୍ତରଭାରତରେ ଧର୍ମ, ଶିକ୍ଷା, ସଭ୍ୟତା ଓ ରାଜ-

—ମୀତର ଗୋଟିଏ ପ୍ରଧାନ କେନ୍ଦ୍ର ଥିଲା । ସେଠାରେ ସେ ସମୟରେ ଯବନ ଓ ଶକମାନଙ୍କର ଆଧିପତ୍ୟ ପ୍ରତିଷ୍ଠିତ ହୋଇଥିଲା । ସେଠାରେ ସେ ଯବନରାଜ (Greek King) ଦ୍ମିତ (Demetrious) ଙ୍କୁ ପରାସ୍ତ କରିବାର ସ୍ୱର୍ଗୀୟ କାଶୀପ୍ରସାଦ ଜୟସ୍ୱାଲ ଓ ସ୍ୱର୍ଗୀୟ ରାଖାଲଦାସ ବାନର୍ଜୀ ମହାଶୟ ମତ ପ୍ରକାଶ କରିଥିଲେ । କିନ୍ତୁ ଏ ବିଷୟରେ କେତେକ ସନ୍ଦେହ ପ୍ରକାଶ କରନ୍ତି । ସେ ସମୟରେ ମଥୁରାର ରାଜା ଯେ ଥାଉ ନା କାହିଁକି, ଖାରବେଳ ଉକ୍ତ ନଗର ସମ୍ପୂର୍ଣ୍ଣରୂପେ ଜୟ କରି ମଗଧ ଅଭିମୁଖରେ ଯୁଦ୍ଧଯାତ୍ରା କଲେ ।

ମଗଧରେ ପ୍ରବେଶ କରି ସେ ଉକ୍ତ ରାଜ୍ୟର ଦକ୍ଷିଣରେ ଥିବା ସୁଦୃଢ଼ 'ଗୋରଥଗିରି' ଦୁର୍ଗ ଅବରୋଧ କରିଥିଲେ । 'ଗୋରଥଗିରି' ଦୁର୍ଗ ଗୟାଜିଲ୍ଲାରେ ପାଟଳିପୁତ୍ର ଓ ଗୟା ମଧ୍ୟରେ ଖଲ୍ଲତିକ ପର୍ବତ ନିକଟରେ ବିଦ୍ୟମାନ ଥିଲା । ଗୋରଥଗିରିର ଆଧୁନିକ ନାମ ବାରବର ପର୍ବତ । ମହାଭାରତରେ ଏହା 'ପ୍ରବର' ପର୍ବତ ନାମରେ ବର୍ଣ୍ଣିତ ହୋଇଅଛି । ବାରବର ପର୍ବତରେ ଖାରବେଳଙ୍କ ଦ୍ୱାରା ବ୍ରାହ୍ମୀ ଅକ୍ଷରରେ ଖୋଦିତ 'ଗୋରଥଗିରି' ଶବ୍ଦ ଅଦ୍ୟାପି ବିଦ୍ୟମାନ ଅଛି ।

ପ୍ରସିଦ୍ଧ ଗୋରଥଗିରି ଦୁର୍ଗ ଅଧିକାର କରିବା ପରେ ଖାରବେଳ ଇତିହାସପ୍ରସିଦ୍ଧ ରାଜଗୃହ ଅଭିମୁଖରେ ସୈନ୍ୟଚାଳନା କଲେ । ପାଟଳିପୁତ୍ରର ପ୍ରତିଷ୍ଠା ପୂର୍ବେ ବହୁ ପ୍ରାଚୀନକାଳରୁ ରାଜଗୃହ ମଗଧ ସାମ୍ରାଜ୍ୟର ରାଜଧାନୀ ଓ ଉତ୍ତରଭାରତର ଏକ ପ୍ରଧାନ ରାଜନୈତିକ କେନ୍ଦ୍ରରୂପେ ଖ୍ୟାତି ଲାଭ କରିଥିଲା । ମହାଭାରତୀୟ ଯୁଗର ଜଣେ ପ୍ରସିଦ୍ଧ ସମ୍ରାଟ୍ ଜରାସନ୍ଧ ଏଠାରେ ଅବସ୍ଥାନ

କରୁଥିଲେ । ଏହା ଗୟା ଜିଲ୍ଲାରେ ଅବସ୍ଥିତ ଥିଲା ଓ ଏହାର ପ୍ରାଚୀନ ନାମ ଗିରିବ୍ରଜ । ଏହାର ଚତୁର୍ଦ୍ଦିଗରେ ବୈଭାର, ପାଣ୍ଡବ, ବୈପୁଲ, ଗୃଧ୍ରକୂଟ ଓ ଋଷିଗିରି ନାମକ ପାଞ୍ଚଟି ପର୍ବତ ନୈସର୍ଗିକ ପ୍ରାଚୀର ସ୍ୱରୂପ ଦଣ୍ଡାୟମାନ ରହି ଏହାକୁ ବାହ୍ୟଶତ୍ରୁର ଆକ୍ରମଣରୁ ରକ୍ଷା କରୁଥିଲା । କିନ୍ତୁ ଖାରବେଳ ଏହାର ଦୁର୍ଭେଦ୍ୟ ନୈସର୍ଗିକ ବେଷ୍ଟନୀ ଓ ସୁଦୃଢ଼ ଅବସ୍ଥିତି ପ୍ରତି ଭ୍ରୂକ୍ଷେପ ନ କରି ନିଜର ବିପୁଳ ସେନା ସାହାଯ୍ୟରେ ଏହାକୁ ଅବରୋଧ କଲେ ।

ହାତୀଗୁମ୍ଫା ଲେଖରେ ପାଟଳିପୁତ୍ରର କୌଣସି ଉଲ୍ଲେଖ ନାହିଁ । ଏହା ନନ୍ଦବଂଶ ରାଜତ୍ୱରୁ ମଗଧ ସାମ୍ରାଜ୍ୟର ରାଜଧାନୀ ଥିଲା । ସମତଳ ପ୍ରଦେଶରେ ଶତ୍ରୁ ଆକ୍ରମଣ ପ୍ରବଳ ହେଲେ ଶତ୍ରୁ-ହସ୍ତରୁ ରକ୍ଷା ପାଇବା ନିମିତ୍ତ ଆକ୍ରାନ୍ତ-ରାଜ୍ୟର ନୃପତିମାନେ ଦୁର୍ଭେଦ୍ୟ ଅରଣ୍ୟବେଷ୍ଟିତ ଗିରିଦୁର୍ଗମାନଙ୍କରେ ଆଶ୍ରୟ ନେବା ପ୍ରାଚୀନ ଭାରତର ଗୋଟିଏ ଚିରାଚରିତ ପ୍ରଥା ଥିଲା । ସେହିପରି ମଗଧର ସମତଳ ପ୍ରଦେଶ ଖାରବେଳଙ୍କ ଦ୍ୱାରା ବିଜିତ ହେବାରୁ ସେଠାର ମୌର୍ଯ୍ୟବଂଶୀୟ ରାଜା ବୃହସ୍ପତି ମିତ୍ର ରାଜଗୃହକୁ ଅଧିକ ନିରାପଦ ମନେ କରି ଶତ୍ରୁହସ୍ତରୁ ନିଜକୁ ରକ୍ଷା କରିବା ପାଇଁ ସେଠାରେ ଆଶ୍ରୟ ଗ୍ରହଣ କରିଥିଲେ; ତେଣୁ ଖାରବେଳ ଶତ୍ରୁକୁ ପରାସ୍ତ କରିବା ପାଇଁ ଏହାକୁ ଅବରୋଧ କରିବାର ଆବଶ୍ୟକତା ଅନୁଭବ କଲେ । ମଗଧର ସୈନ୍ୟମାନେ ଆକ୍ରମଣକାରୀଙ୍କ ନିକଟରେ ସହଜରେ ଆତ୍ମସମର୍ପଣ ନ କରି ବହୁଦିନ ପର୍ଯ୍ୟନ୍ତ ଭୀଷଣ ପ୍ରତିରୋଧ କରିଥିଲେ; କିନ୍ତୁ ସମସ୍ତ ପ୍ରତିରୋଧ ବ୍ୟର୍ଥ ହେବାରୁ ଶେଷରେ ମଗଧରାଜ ପରାଜିତ ହେଲେ ।

ରାଜଗୃହ ଅଧିକାର ପରେ ଖାରବେଳ ଶତ୍ରୁସୈନ୍ୟମାନଙ୍କର ପ୍ରବଳ ପ୍ରତିରୋଧଜନିତ କ୍ଳାନ୍ତି ଓ ଅବସାଦ ଦୂର କରିବା ପାଇଁ ସୈନ୍ୟମାନଙ୍କୁ ପୁନର୍ବାର ମଥୁରା ନେଇ ଯାଇଥିଲେ । ସେଠାରେ ଉପଗତ ହୋଇ ସେ ସମସ୍ତ ଗୃହବାସୀ, ଗୃହପତି, ବ୍ରାହ୍ମଣ ଓ ଶ୍ରମଣମାନଙ୍କୁ ପାନଭୋଜନ ଦ୍ୱାରା ସନ୍ତୁଷ୍ଟ କରିଥିଲେ । ତତ୍ପରେ ସେ ବହୁ ହସ୍ତୀ, ଗଜ, ନର, ରଥ ବେଷ୍ଟିତ 'ପଲ୍ଲବଭାର କଳ୍ପବୃକ୍ଷ' ( ଏହା ଜୈନମାନଙ୍କର ବିଜୟସୂଚକ ) ସହ କଳିଙ୍ଗକୁ ଫେରି ଆସିଥିଲେ । ମଗଧ ବିଜୟ ସ୍ମୃତିକୁ ଚିରସ୍ମରଣୀୟ କରିବା ନିମନ୍ତେ ସେ ରାଜତ୍ୱର ନବମ ବର୍ଷରେ ଅଷ୍ଟତ୍ରିଂଶ ଲକ୍ଷ ମୁଦ୍ରା ବ୍ୟୟକରି ବୈଦୁର୍ଯ୍ୟଖଚିତ 'ମହାବିଜୟ ପ୍ରାସାଦ' ନାମକ ବିରାଟ କଳିଙ୍ଗ ରାଜନିବାସ ନିର୍ମାଣ କରିଥିଲେ ।

ଦିଗ୍‌ବିଜୟୀ ନରପତିମାନେ ନିଜ ବିଜୟର ସ୍ମୃତି ସ୍ୱରୂପ ସ୍ତମ୍ଭ, ନଗର ଓ ହର୍ମ୍ୟ ପ୍ରଭୃତି ନିର୍ମାଣ କରିବା ପୃଥିବୀ-ଇତିହାସର ଗୋଟିଏ ପରମ୍ପରା ଅନୁସୃତ ବିଧି । ବୀରାଗ୍ରଣୀ ଆଲେକ୍‌ଜାଣ୍ଡର ଇତିହାସ-ପ୍ରସିଦ୍ଧ ମିଶର ରାଜ୍ୟ ଜୟର ଚିହ୍ନ ସ୍ୱରୂପ ନୀଳନଦୀର ସାଗର ସଙ୍ଗମ ସ୍ଥଳରେ 'ଆଲେକ୍‌ଜାଣ୍ଡ୍ରିଆ' ନଗର ପ୍ରତିଷ୍ଠା କରିଥିଲେ । ମୋଗଲ୍ ସମ୍ରାଟ୍ ଅକ୍‌ବର ଚିତୋର ବିଜୟର ସ୍ମାରକ ସ୍ୱରୂପ ବହୁ ସୁରମ୍ୟ ହର୍ମ୍ୟ ଶୋଭିତ 'ଫତେପୁରସିକ୍ରୀ' ନାମକ ନଗର ନିର୍ମାଣ କରିଥିଲେ । ପ୍ରସିଦ୍ଧ ଇଂରେଜ ନୌ-ସେନାପତି ନେଲସନ୍‌ଙ୍କ ଦ୍ୱାରା ବିଶ୍ୱବିଜୟୀ ନେପୋଲିୟନଙ୍କର ଟ୍ରାଫଲ୍‌ଗାର ନୌଯୁଦ୍ଧରେ ପରାଭବକୁ ସ୍ମରଣୀୟ କରିବା ପାଇଁ ଲଣ୍ଡନ ସହରରେ 'ଟ୍ରାଫଲ୍‌ଗାର ସ୍କୋୟାର' ନିର୍ମିତ ହୋଇଥିଲା । ସେହିପରି

କଳିଙ୍ଗ ସମ୍ରାଟ୍ ଖାରବେଳ ଭାରତର ଉଦାହାରଣର ଶ୍ରେଷ୍ଠ ରାଜ୍ୟ ମଗଧବିଜୟର ସ୍ମୃତିରକ୍ଷା ପାଇଁ ଏହି ବିଶାଳ 'ମହାବିଜୟ ପ୍ରାସାଦ' ନିର୍ମାଣ କରିଥିଲେ ।

ସେ ରାଜତ୍ୱର ଦଶମ ଓ ଏକାଦଶ ବର୍ଷରେ ଅନ୍ୟ କୌଣସି ରାଜ୍ୟଜୟରେ ବହିର୍ଗତ ନ ହୋଇ ସ୍ୱଦେଶ ଓ ସ୍ୱୀୟ ରାଜଧାନୀ କଳିଙ୍ଗ ନଗରରେ ବହୁ କୀର୍ତ୍ତି ନିର୍ମାଣ କରିଥିଲେ । କଳିଙ୍ଗର ପୂର୍ବ ରାଜାମାନଙ୍କ ଦ୍ୱାରା ସ୍ଥାପିତ ଓ ଏକଶହ ତେରବର୍ଷ ପର୍ଯ୍ୟନ୍ତ ପରିତ୍ୟକ୍ତ 'ପୃଥୁଦକଦର୍ଭପୁର୍ଣ୍ଣ' ନଗର ପରିଷ୍କାର କରି 'ଜାନପଦ ଭବନ' ଉଦ୍ଧାର କରିଥିଲେ ।

ରାଜତ୍ୱର ଦ୍ୱାଦଶ ବର୍ଷରେ ଖାରବେଳ ପୁନର୍ବାର ପଥପାର୍ଶ୍ୱବର୍ତ୍ତୀ ବହୁରାଜ୍ୟ ମଧ୍ୟରେ ଯୁଦ୍ଧଯାତ୍ରା କରି ସୁଦୂର ଉତ୍ତରାପଥ ରାଜାମାନଙ୍କର ଭୟ ଉତ୍ପାଦନ କରିଥିଲେ । ବୌଦ୍ଧ-ଗ୍ରନ୍ଥମାନଙ୍କରେ ଶ୍ରାବସ୍ତିଠାରୁ ତକ୍ଷଶୀଳା ପର୍ଯ୍ୟନ୍ତ ବିସ୍ତୃତ ରାଜ୍ୟ ବା ଅଧୁନାକ ଯୁକ୍ତପ୍ରଦେଶର ପଶ୍ଚିମାର୍ଦ୍ଧ ଓ ପଞ୍ଜାବ ପ୍ରଦେଶ ଉତ୍ତରାପଥ ନାମରେ ବର୍ଣ୍ଣିତ ହୋଇଅଛି । କାବ୍ୟ ମୀମାଂସା ପୁସ୍ତକରେ 'ପୃଥୁଦକାତ୍ ପରତଃ ଉତ୍ତରାପଥଃ' ଅର୍ଥାତ୍ ଥାନେଶ୍ୱର ନିକଟବର୍ତ୍ତୀ 'ପୃଥୁଦକ' ନାମକ ସ୍ଥାନର ଉତ୍ତର-ପଶ୍ଚିମରେ ଥିବା ରାଜ୍ୟ ସକଳ ଉତ୍ତରାପଥ ନାମରେ ଅଭିହିତ ହୋଇଅଛି । ହାତୀଗୁମ୍ଫା ଲେଖରେ ରାଜା ଶବ୍ଦ ବହୁବଚନାନ୍ତ ହୋଇଥିବାରୁ ସ୍ପଷ୍ଟ ଜଣାଯାଏ ଯେ, ଉତ୍ତରାପଥରେ କୌଣସି ଏକ ଛତ୍ରାଧିପତି ସମ୍ରାଟ୍ ନ ଥିଲେ । ଏହା ସ୍ୱଳ୍ପ ଶକ୍ତିଶାଳୀ ନୃପତିମାନଙ୍କ ଦ୍ୱାରା ଶାସିତ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ଥିଲା । ଖାରବେଳ ସେମାନଙ୍କୁ ଅକ୍ଳେଶରେ ପରାସ୍ତ

କରି ଭାରତର ଉତ୍ତର-ପଶ୍ଚିମ ସୀମାନ୍ତ ପର୍ଯ୍ୟନ୍ତ କଳିଙ୍ଗର ବୈଜୟନ୍ତୀ ଉଡ଼ାଇଥିଲେ । ଦାକ୍ଷିଣାତ୍ୟର ପ୍ରସିଦ୍ଧ ନୃପତିମାନଙ୍କ ମଧ୍ୟରେ ଏକମାତ୍ର ଖାରବେଳ ସୁଦୂର ସିନ୍ଧୁନଦୀ ପର୍ଯ୍ୟନ୍ତ ରାଜ୍ୟବିସ୍ତାର କରିବାକୁ ସମର୍ଥ ହୋଇଥିଲେ । ଏହା ଓଡ଼ିଆ ଜାତି ପକ୍ଷରେ କମ୍ ଗର୍ବ ଓ ଗୌରବର ବିଷୟ ନୁହେ ।

ଉତ୍ତରାପଥ ବିଜୟ ପରେ ଜୟଶ୍ରୀମଣ୍ଡିତ ଖାରବେଳ କୋଶଳ, କାଶୀ ପ୍ରଭୃତି ରାଜ୍ୟମାନଙ୍କ ମଧ୍ୟରେ ନିଜର ବିପୁଳ ସେନା ଚାଳନା କରି ପୁନର୍ବାର ପ୍ରବଳଭାବରେ ମଗଧ ଆକ୍ରମଣ କରିଥିଲେ । ସେଠାରେ ପ୍ରବେଶ କରି ସେ ଗଙ୍ଗାନଦୀକୂଳରେ ସୈନ୍ୟ ସମାବେଶ କରିଥିଲେ; ତେଣୁ ସେ ପ୍ରଥମେ ପାଟଳିପୁତ୍ର ଅବରୋଧ କରିଥିବା ସମ୍ଭବପର । ସେଠାରେ ତୁମୁଳ ସଂଗ୍ରାମ ପରେ ଅଙ୍ଗ ମଗଧର ରାଜା ବୃହସ୍ପତି ମିତ୍ର * ସମ୍ପୂର୍ଣ୍ଣରୂପେ ପରାସ୍ତ ହୋଇ ତାଙ୍କର ଅଧୀନତା ସ୍ୱୀକାର କରିଥିଲେ ।

ଅଶୋକଙ୍କ କଳିଙ୍ଗ ବିଜୟର ଭୀଷଣ ପ୍ରତିଶୋଧ ନେବା ନିମିତ୍ତ ଖାରବେଳ ପାଞ୍ଚବର୍ଷ ମଧ୍ୟରେ ଦୁଇ ଥର ମଗଧରାଜ୍ୟ ଆକ୍ରମଣ କରିଥିଲେ । ପ୍ରଥମ ମଗଧବିଜୟରେ ପୂର୍ଣ୍ଣ ସନ୍ତୋଷ ଲାଭ ନ କରି ସେ ପୁନର୍ବାର ପ୍ରବଳ ଭାବରେ ମଗଧ ଆକ୍ରମଣ କରି ଏହାର ଅଧିବାସୀମାନଙ୍କୁ ସର୍ବତୋଭାବରେ ପଦାନତ କରିଥିଲେ ।

---

* ହାତୀଗୁମ୍ଫା ଲେଖରେ ବର୍ଣ୍ଣିତ 'ବୃହସ୍ପତି ମିତ୍ର' ଓ ସୁଙ୍ଗବଂଶର ପ୍ରତିଷ୍ଠାତା ପୁଷ୍ୟମିତ୍ର ଏକ ଓ ଅଭିନ୍ନ ବୋଲି କେତେକ ଐତିହାସିକ ମତ ପ୍ରକାଶ କରନ୍ତି; କିନ୍ତୁ ସେ ଦୁଇଜଣ ଭିନ୍ନ ବ୍ୟକ୍ତି ଥିବାର ବିଶ୍ୱାସଯୋଗ୍ୟ ପ୍ରମାଣ ମିଳିଲାଣି । ବୃହସ୍ପତି ମିତ୍ର ଅଶୋକଙ୍କ ପରବର୍ତ୍ତୀ ମୌର୍ଯ୍ୟବଂଶୀୟ ଜଣେ ନରପତି ଥିଲେ ।

ଏହା ଫଳରେ ତାଙ୍କର ବହୁକାଳପୋଷିତ ମଗଧ-ଧର୍ଷଣ ଅଭିଳାଷ ପୂର୍ଣ୍ଣ ହୋଇଥିଲା । ଭୀଷଣ କଳିଙ୍ଗ ଯୁଦ୍ଧ ପରେ କଳିଙ୍ଗବାସୀମାନେ ଯେପରି ଭୀତ, ତ୍ରସ୍ତ ଓ ଅବସନ୍ନ ହୋଇଥିଲେ, ଖାରବେଳଙ୍କ ମଗଧବିଜୟ ଫଳରେ ମଗଧବାସୀମାନେ ସେହିପରି ଭୀତତ୍ରସ୍ତ ଓ ଭଗ୍ନୋତ୍ସାହ ହୋଇ ପଡ଼ିଥିଲେ । ସେ ମଗଧବିଜୟର ସ୍ମାରକ ସ୍ୱରୂପ ବହୁବର୍ଷ ପୂର୍ବେ କଳିଙ୍ଗରୁ ନନ୍ଦରାଜା ମହାପଦ୍ମନନ୍ଦଙ୍କ ଦ୍ୱାରା ନୀତ 'କଳିଙ୍ଗ ଜିନାସନ'କୁ ଅସଂଖ୍ୟ ଅଶ୍ୱ, ରଥ, ଗଜ, ସେନା ଓ ପରିଚରମାନଙ୍କ ଶୋଭାଯାତ୍ରା ମଧ୍ୟରେ ପୁନର୍ବାର ସ୍ୱଦେଶକୁ ନେଇ ଆସିଥିଲେ । ମଗଧବିଜୟ ତାଙ୍କ ଜୀବନର ତଥା ଭାରତ ଇତିହାସର ଗୋଟିଏ ପ୍ରସିଦ୍ଧ ଘଟନା । ଦାକ୍ଷିଣାତ୍ୟର କୌଣସି ନୃପତି ଇତିହାସପ୍ରସିଦ୍ଧ ଶକ୍ତିଶାଳୀ ମଗଧରାଜ୍ୟକୁ ଏପରି ଭାବରେ ପଦାନତ କରିଥିବାର ଦୃଷ୍ଟାନ୍ତ ଇତିହାସରୁ ମିଳେ ନାହିଁ ।

ପ୍ରସିଦ୍ଧ କାଞ୍ଚୀଯୁଦ୍ଧରେ ଜୟଲାଭ କରି ଗଜପତି ପୁରୁଷୋତ୍ତମ ଦେବଙ୍କ ନେତୃତ୍ୱରେ ଓଡ଼ିଆ ପାଇକ ବାହିନୀ ବିଜୟର ସ୍ମାରକ ସ୍ୱରୂପ ଗଣେଶ ଓ ସାକ୍ଷୀଗୋପାଳ ମୂର୍ତ୍ତିଦ୍ୱୟ ଓ କାଞ୍ଚୀ ରାଜକନ୍ୟା ପଦ୍ମାବତୀଙ୍କୁ ସ୍ୱଦେଶକୁ ଆଣିବା ସମୟରେ ହୃଦୟରେ ଯେପରି ଅପାର ଆନନ୍ଦ ଓ ଗର୍ବ ଅନୁଭବ କରିଥିଲେ, ସେହି ସୁଦୂର ଅତୀତରେ କଳିଙ୍ଗବାହିନୀ ମଗଧାଧିପ ନନ୍ଦରାଜାଙ୍କ ଦ୍ୱାରା କଳିଙ୍ଗରୁ ଅପହୃତ ଜିନମୂର୍ତ୍ତି ପୁନରୁଦ୍ଧାର ପୂର୍ବକ ସ୍ୱଦେଶକୁ ବିରାଟ ଶୋଭାଯାତ୍ରା କରି ଫେରିବା ସମୟରେ ସେହିପରି ଗର୍ବ, ଗୌରବ ଓ ଆନନ୍ଦ ଅନୁଭବ କରିଥିଲେ । ସେମାନଙ୍କର ବିଜୟ ଓ ଆନନ୍ଦ କୋଳାହଳରେ ଗଗନ ଓ ପବନ ଶତଧା ବିଦୀର୍ଣ୍ଣ ହୋଇ

ଯାଇଥିଲା । ଜୟଶ୍ରୀମଣ୍ଡିତ କଳିଙ୍ଗବାହିନୀ ସ୍ୱଦେଶକୁ ଫେରିବା ପରେ ସମଗ୍ର କଳିଙ୍ଗ ରାଜ୍ୟର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଗର୍ବ ଓ ଆନନ୍ଦର ଗୋଟିଏ ପ୍ରବଳ ସ୍ରୋତ ପ୍ରବାହିତ ହୋଇ ରାଜ୍ୟର ଅଧିବାସୀମାନଙ୍କୁ ଉଦ୍ବୁଦ୍ଧ, ଉତ୍ସାହିତ ଓ ଉତ୍ଫୁଲ୍ଲ କରିଥିଲା । ଏହି ବିଜୟର ସ୍ମୃତିକୁ ଜାତିର ହୃଦୟରେ ବଦ୍ଧମୂଳ କରିବା ପାଇଁ ସେ ରାଜ୍ୟର ନାନାସ୍ଥାନରେ ବିରାଟ ଶୋଭାଯାତ୍ରା ଓ ଉତ୍ସବାଦି କରାଇଥିଲେ । ବିଜୟଲବ୍ଧ ବିପୁଳ ଧନରତ୍ନ ବ୍ୟୟରେ ରାଜ୍ୟର ନାନାସ୍ଥାନରେ ନଗର, ଗୋପୁର, ମନ୍ଦିର, ଅଟ୍ଟାଳିକା ଓ ସ୍ତମ୍ଭ ପ୍ରତିଷ୍ଠିତ ହୋଇଥିଲା । ମଗଧବିଜୟ ଫଳରେ ଖାରବେଳ ସମଗ୍ର ଭାରତର ଅପ୍ରତିଦ୍ୱନ୍ଦ୍ୱୀ ଏକଛତ୍ର ସମ୍ରାଟର ସ୍ଥାନ ଅଧିକାର କରିଥିଲେ । ଏହାପରେ ଅନ୍ୟାନ୍ୟ ଅବିଜିତ ରାଜ୍ୟର ନୃପତିମାନେ ତାଙ୍କ ପ୍ରଚଣ୍ଡ ପ୍ରତାପର ସମ୍ବାଦ ପାଇ ତାଙ୍କର ତୁଷ୍ଟିବିଧାନ ନିମିତ୍ତ ଯତ୍ନବାନ୍ ହୋଇଥିଲେ । କଳିଙ୍ଗର ପଶ୍ଚିମରେ କେନ୍ଦ୍ର ଭାରତସ୍ଥ ଦୁର୍ଗମ ପର୍ବତଶ୍ରେଣୀ ଓ ନିବିଡ଼ ଅରଣ୍ୟାନୀପୂର୍ଣ୍ଣ ରାଜ୍ୟମାନଙ୍କରେ ନାଗବଂଶୀ ରାଜାମାନେ ରାଜତ୍ୱ କରୁଥିଲେ । ସେମାନେ ତାଙ୍କ ନିକଟକୁ ମଣି ମୁକ୍ତାଦି ନାନାବିଧ ରତ୍ନ ଓ ଦୁର୍ଲ୍ଲଭ ବିସ୍ମୟୋତ୍ପାଦକ ହସ୍ତୀ, ଅଶ୍ୱ, କୃଷ୍ଣସାର ପ୍ରଭୃତି ଜୀବସକଳ ଉପଢୌକନ ସ୍ୱରୂପ ପଠାଇଥିଲେ ।

ଭାରତର ସୁଦୂର ଦକ୍ଷିଣ ସୀମାନ୍ତବର୍ତ୍ତୀ ପାଣ୍ଡ୍ୟ ରାଜ୍ୟର ରାଜା ତାଙ୍କର ପ୍ରବଳ ପରାକ୍ରମ ଶ୍ରବଣରେ ଭୀତ ହୋଇ ତାଙ୍କ ନିକଟକୁ ନାନାବିଧ ଆଭରଣ ଓ ମଣି ମୁକ୍ତାଦି ରତ୍ନମାନ ଉପହାର ସ୍ୱରୂପ ପ୍ରେରଣ କରିଥିଲେ । ଏହିପରି ଚତୁର୍ଦ୍ଦଶ ବର୍ଷ ରାଜତ୍ୱକାଳ ମଧ୍ୟରେ

'ଅପ୍ରତିହତ', 'ଚକ୍ରବାହନ', 'ଚକ୍ରଧର', 'ଗୁପ୍ତଚକ୍ର', 'ପ୍ରବର୍ତ୍ତିଚକ୍ର', 'ମହାବିଜୟୀ' * ପ୍ରଭୃତି ଚକ୍ରବର୍ତ୍ତୀ ଉପାଧିଭୂଷିତ ଖାରବେଳ ଆକୁମାରୀ ହିମାଳୟବିସ୍ତୃତ ଭାରତଭୂମିରେ ନିଜର ପ୍ରବଳ ଶକ୍ତି ପ୍ରତିଷ୍ଠାଦ୍ୱାରା ପ୍ରାଚୀନ ବୀରଭୂମି କଳିଙ୍ଗକୁ ଜୟଶ୍ରୀମଣ୍ଡିତ ଓ ଗୌରବାନ୍ୱିତ କରି ଭାରତର ରାଜ୍ୟଗୋଷ୍ଠୀ ମଧ୍ୟରେ ଏହାକୁ ଶୀର୍ଷସ୍ଥାନ ପ୍ରଦାନ କରିବାକୁ ସମର୍ଥ ହୋଇଥିଲେ ।

---

## ତୃତୀୟ ଅଧ୍ୟାୟ

## କଳିଙ୍ଗ ନଗର ଓ ତାହାର ଅବସ୍ଥିତି ନିର୍ଣ୍ଣୟ

ଉଦୟଗିରିର ହାତୀଗୁମ୍ଫାରେ ଖୋଦିତ ଖାରବେଳଙ୍କ ବିରାଟ ପ୍ରଶସ୍ତିରୁ ତତ୍‌କାଳୀନ କଳିଙ୍ଗସାମ୍ରାଜ୍ୟର ରାଜଧାନୀ କଳିଙ୍ଗ-ନଗରର ପ୍ରାକୃତିକ ଅବସ୍ଥାନ, ଗଠନ ଓ ସୌନ୍ଦର୍ଯ୍ୟ, ରାଜପ୍ରାସାଦର କମନୀୟତା, ନାଗରିକମାନଙ୍କର ଆମୋଦ ପ୍ରମୋଦ, ସୁଖ ଓ ସମୃଦ୍ଧି ଏବଂ ପୌରବର୍ଗଙ୍କ ପ୍ରତି ଚେତିରାଜ ବଂଶର ପରମ ବଦାନ୍ୟତା ସମ୍ବନ୍ଧରେ ଅନେକ ବିଷୟ ଜଣାଯାଏ । ଦୁର୍ଭାଗ୍ୟ-ବଶତଃ ପ୍ରାକୃତିକ ଉତ୍କଳର କୌଣସି ସ୍ଥାନରେ ସରକାର ବା ଅନ୍ୟ କୌଣସି ସାଧାରଣ ସମିତି ଦ୍ୱାରା ଭୂଖୋଦନ କାର୍ଯ୍ୟ ସାଧିତ ହୋଇ ନ ଥିବାରୁ ଏହାର ଅବସ୍ଥିତି ନିଃସନ୍ଦେହରୂପେ ନିର୍ଣ୍ଣୟ କରିବା ବର୍ତ୍ତମାନ ସମ୍ଭବପର ନୁହେ । ତେଣୁ ଉପରୋକ୍ତ ଲେଖ ଓ ଅନ୍ୟାନ୍ୟ କେତେକ ତାମ୍ରଶାସନ ଓ ଗ୍ରନ୍ଥର ଅବଲମ୍ବନରେ ଏହି

---

* ହାତୀଗୁମ୍ଫା ଶିଳାଲେଖରେ କଳିଙ୍ଗ ସମ୍ରାଟ୍ ଖାରବେଳଙ୍କ ଏ ସମସ୍ତ ଉପାଧି ଉଲ୍ଲେଖ ଅଛି ।

ନଗରର ସୌନ୍ଦର୍ଯ୍ୟ, ଐଶ୍ୱର୍ଯ୍ୟ ଓ ଅବସ୍ଥିତି ସମ୍ବନ୍ଧରେ ନିମ୍ନୋକ୍ତ ବିବରଣୀ ପ୍ରଦତ୍ତ ହେଲା ।

ଖାରବେଳଙ୍କ ରାଜତ୍ୱର ପ୍ରଥମ ବର୍ଷ ବୃତ୍ତାନ୍ତରୁ ଜଣାଯାଏ ଯେ କଳିଙ୍ଗ ନଗରରେ ଗୋପୁର, ପ୍ରାକାର, ନିବେଶନ (ରାଜପ୍ରାସାଦ) ତଡ଼ାଗ, ଉଦ୍ୟାନ ପ୍ରଭୃତି ବହୁ ସଂଖ୍ୟାରେ ତାଙ୍କ ରାଜତ୍ୱପୂର୍ବରୁ ବିଦ୍ୟମାନ ଥିଲା । କିନ୍ତୁ ସେଗୁଡ଼ିକ ପ୍ରବଳ ପ୍ରଭଞ୍ଜନ ଦ୍ୱାରା ନଷ୍ଟ ହୋଇ ଯାଇଥିବାରୁ ସେ ରାଜ୍ୟାଭିଷେକର ବର୍ଷକ ମଧ୍ୟରେ ବାତ-ବିନଷ୍ଟ ଗୋପୁର, ପ୍ରାକାର, ନିବେଶନ ଇତ୍ୟାଦିର ପୁନଃ ସଂସ୍କାର, ଗଭୀର ଶୀତଳ ତଡ଼ାଗମାନଙ୍କର ବନ୍ଧନିର୍ମାଣ ଓ ଉଦ୍ୟାନ ସକଳର ପୁନଃ ପ୍ରତିଷ୍ଠା କରିଥିଲେ । ଏଥିରେ ୩୫ ଲକ୍ଷ ମୁଦ୍ରା ବ୍ୟୟିତ ହୋଇଥିଲା* । ନବମ ବର୍ଷ ବୃତ୍ତାନ୍ତରୁ ଜଣାଯାଏ ଯେ ଖାରବେଳ ମଗଧ ବିଜୟର ସ୍ମୃତିସ୍ତମ୍ଭ ସ୍ୱରୂପ ଏଠାରେ ବୈଦୁର୍ଯ୍ୟ-ଖଚିତ 'ମହାବିଜୟ ପ୍ରାସାଦ' ନାମକ ରାଜନିବାସ ନିର୍ମାଣ କରିଥିଲେ । ଏହାର ନିର୍ମାଣରେ ଅଷ୍ଟତ୍ରିଂଶ ଲକ୍ଷ ମୁଦ୍ରା ବ୍ୟୟିତ ହୋଇଥିଲା † । ଏହି ବିରାଟ ରାଜପ୍ରାସାଦର ଗଠନ, ଶିଳ୍ପ ଓ କାରୁକାର୍ଯ୍ୟ ଯେ ଅତି ଚମତ୍କାର ହୋଇଥିବ ତାହା ଉପରୋକ୍ତ ବିପୁଳ ଧନବ୍ୟୟରୁ

---

* 'ଅଭିଷିକ୍ତ'—ମାତଶ୍ଚ ପ୍ରଥମେ ବର୍ଷେ ବାତବିହତ—ଗୋପୁର,—ପ୍ରାକାର-ନିବେଶନ ପ୍ରତି ସଂସ୍କାରୟତି କଲିଙ୍ଗ ନଗରେ, ଗମ୍ଭୀର-ଶୀତଲ-ତଡ଼ାଗ-ପାଲିଶ୍ଚ-ବନ୍ଧୟତି; ସର୍ବୋଦ୍ୟାନ 'ପ୍ରତିସଂସ୍ଥାପନଞ୍ଚ କାରୟତି ପଞ୍ଚତ୍ରିଂଶ ଶତ ସହସ୍ରୈଃ (ହାତୀଗୁମ୍ଫା ଲେଖ)

† 'ନବମେଚ ବର୍ଷେ' ବୈଦୁର୍ଯ୍ୟଂ କଲିଙ୍ଗ ରାଜନିବାସଂ ମହାବିଜୟ ପ୍ରାସାଦଂ କାରୟତି ଅଷ୍ଟତ୍ରିଂଶ—ଶତ—ସହସ୍ରୈଃ (ହାତୀଗୁମ୍ଫା ଲେଖ)

ସ୍ପଷ୍ଟ ଜଣାଯାଏ । ଭାରତର ଅନ୍ୟ କୌଣସି ସ୍ଥାନରେ ଏପରି 'ବୈଦୁର୍ଯ୍ୟ-ପ୍ରାସାଦ' ଥିବାର ପ୍ରାଚୀନ ଭାରତୀୟ ଲେଖମାନଙ୍କରୁ ଜଣାଯାଏ ନାହିଁ । କେବଳ ପ୍ରାଚୀନ ବୌଦ୍ଧ ଜାତକରେ ଏପରି ଏକ ପ୍ରାସାଦର ସୂଚନା ମିଳେ । † ଲେଖବର୍ଣ୍ଣିତ ଦ୍ୱାଦଶ ବର୍ଷ ବୃତ୍ତାନ୍ତରୁ ଜଣାଯାଏ କଳିଙ୍ଗ ନଗରରେ ଖାରବେଳ ଉକ୍ତ ବର୍ଷ ଅନେକଗୁଡ଼ିଏ ରାସ୍ତା, ଚତ୍ୱର, ପଲଘା ବା ତୋରଣ, ଗୋପୁର ବା ମୁଖଶାଳୀ ଓ ଶିଖରମାନ ( ଶିଖରଯୁକ୍ତ ମନ୍ଦିର ଓ ପ୍ରାସାଦ ) ନିର୍ମାଣ କରିଥିଲେ ।

କଳିଙ୍ଗ ରାଜଧାନୀର ବର୍ଣ୍ଣନା ପାଠ କଲେ ଜଣାଯାଏ ଯେ ଭାରତର ଅନ୍ୟାନ୍ୟ ରାଜ୍ୟର ପ୍ରାଚୀନ ରାଜଧାନୀମାନଙ୍କ ସହିତ ଏହାର ଅନେକ ସାମଞ୍ଜସ୍ୟ ବିଦ୍ୟମାନ ଥିଲା । 'ମିଳିନ୍ଦ ପାହ୍ନ' ନାମକ ପ୍ରାଚୀନ ପାଲିଗ୍ରନ୍ଥରେ ପୁଷ୍ୟମିତ୍ର ସୁଙ୍ଗଙ୍କ ସମସାମୟିକ ଗ୍ରୀକ୍ ନୃପତି ମିନେନ୍ଦାର୍ ବା ମିଳିନ୍ଦଙ୍କ ରାଜଧାନୀ ସଗଲ ବର୍ଣ୍ଣନାରେ ଆମ୍ଭେମାନେ ଉପରୋକ୍ତ ଅନୁଷ୍ଠାନମାନଙ୍କର ପରିଚୟ ପାଉଁ, ଯଥା— "ଗୋପୁର, ତଲ୍ଲକ (ତଡ଼ାଗ), ଅରାମ, ଉୟ୍ୟାନ (ଉଦ୍ୟାନ), ଉପବନ, ବୀଥି, ଚତ୍ୱର, ଚତୁକ୍କ ( ଚତୁଷ୍କ ), ଶିଙ୍ଗାଟକ (ଶୃଙ୍ଗାଟକ), ଅନ୍ତରାପନ, ଜାନଗୃସତ, ହିମଗିରି-ଶିଖର-ସଂକାଶ-ବର ଭବନ" ଇତ୍ୟାଦି । ଏଗୁଡ଼ିକ ସଗଲ ନଗରୀରେ ପ୍ରତିଷ୍ଠିତ ହୋଇଥିଲା । ଖାରବେଳ ପ୍ରାଚୀନ ଭାରତୀୟ ନଗର-ନିର୍ମାଣ-ପ୍ରଣାଳୀ

---

† Fousboll's Jataka Vol. VI P. 279.—ବେଳୁରିୟ—ଫଳ—ସଂଚେଦିତ-ପ୍ରାସାଦ—'ବୀଥି— ଚତ୍ୱର— ପଲଘାନି— ଗୋ ପୁରାଣି— ଶିଖରାଣି ନିବେଶୟନ୍ତି । ( ହାତୀଗୁମ୍ଫା ଲେଖ )

ଅନୁସରଣ କରି କଳିଙ୍ଗ ରାଜଧାନୀର ସୌନ୍ଦର୍ଯ୍ୟ ବୃଦ୍ଧି ନିମିତ୍ତ ଲକ୍ଷ ଲକ୍ଷ ମୁଦ୍ରା ବ୍ୟୟରେ ଉପରୋକ୍ତ ଅନୁଷ୍ଠାନମାନ ନିର୍ମାଣ କରିଥିଲେ । କେବଳ ସେତିକି ନୁହେଁ, ସେ ନନ୍ଦରାଜାଙ୍କ ଦ୍ୱାରା ୧୦୩ ବର୍ଷ ପୂର୍ବେ ଖୋଦିତ ପ୍ରଣାଳୀକୁ ରାଜତ୍ୱର ପଞ୍ଚମ ବର୍ଷରେ ତନସୁଲି ବାଟରେ ନିଜ ନଗର ମଧ୍ୟକୁ ଖୋଲାଇଥିଲେ । ଏହା ତାଙ୍କ ରାଜତ୍ୱର ଗୋଟିଏ ପ୍ରଧାନ କାର୍ଯ୍ୟ ଓ ଏଥିରେ ବହୁ ସହସ୍ର ମୁଦ୍ରା ବ୍ୟୟିତ ହୋଇଥିଲା । * ଏହି ପ୍ରଣାଳୀ ଦ୍ୱାରା ନଗରର ପ୍ରାଧାନ୍ୟ ବୃଦ୍ଧି ସଙ୍ଗେ ସଙ୍ଗେ ନାଗରିକମାନଙ୍କର ଜଳସେଚନ କାର୍ଯ୍ୟ ମଧ୍ୟ ସୁଗମ ହୋଇଥିଲା ।

ହାତୀଗୁମ୍ଫା ଲେଖରେ ଗୋପୁର, ଶିଖର ପ୍ରଭୃତି 'ଦେବାୟତନ' ବା ଦେବ ମନ୍ଦିରମାନଙ୍କର ବହୁଳ ବର୍ଣ୍ଣନା ଥିବାରୁ ନିଃସନ୍ଦେହରୂପେ ପ୍ରମାଣିତ ହୁଏ ଯେ ସେହି ପ୍ରାଚୀନ ଯୁଗରେ ମଧ୍ୟ କଳିଙ୍ଗରେ ଶତ ଶତ ମନ୍ଦିର ବିଦ୍ୟମାନ ଥିଲା । ଗୋପୁରର ଅର୍ଥ ମୁଖଶାଳା ଓ ଏହା ଧର୍ମମନ୍ଦିରର ଶୋଭାବର୍ଦ୍ଧକ ଅଂଶରୂପେ ନିର୍ମିତ ହେଉଥିଲା । ବର୍ତ୍ତମାନ କେବଳ ଦାକ୍ଷିଣାତ୍ୟର ମନ୍ଦିରମାନଙ୍କ ସମ୍ମୁଖରେ ଗୋପୁରମାନ ଦେଖାଯାଏ । କିନ୍ତୁ ଅତି ପ୍ରାଚୀନ କାଳରେ ସମଗ୍ର ଭାରତବର୍ଷରେ ଗୋପୁର ନିର୍ମାଣ ପ୍ରଥା ପ୍ରଚଳିତ ଥିବାର 'ମିଳିନ୍ଦପାହ୍ନ' ବର୍ଣ୍ଣିତ ସଗଲ ନଗରୀର ବୃତ୍ତାନ୍ତ ଓ ହାତୀଗୁମ୍ଫା ପ୍ରଦତ୍ତ କଳିଙ୍ଗ ନଗର ବର୍ଣ୍ଣନାରୁ ଜଣାଯାଏ । ହାତୀ-

---

* "ପଞ୍ଚମେ ଚଦାନୀଂ ବର୍ଷେ ନନ୍ଦରାଜେନ ତ୍ରିବର୍ଷ ଶତାତ୍ ପୂର୍ବମୁଦ୍‌ଘାଟିତଂ ତନସୁଲୀୟ—ବର୍ତ୍ମନଃ ପ୍ରଣାଳୀଂ ନଗରଂ ପ୍ରବେଶୟତି, ଶତ ସହସ୍ରୈଶ୍ଚ ଗାନୟତି" (ହାତୀଗୁମ୍ଫା ଲେଖ)

ଗୁମ୍ଫା ଲିପିରେ 'ଗୋପୁରାଣି' ଶବ୍ଦ ବହୁବଚନ ଜ୍ଞାପକ; ତେଣୁ ସେହି ପ୍ରାଚୀନ ଯୁଗରେ ମଧ୍ୟ ଏଠାରେ ଅନେକ ଗୋପୁର ଲୋକମାନଙ୍କର ଦେବାର୍ଚ୍ଚନ ଓ ଧର୍ମାଲୋଚନା ନିମିତ୍ତ ନିର୍ମିତ ହୋଇଥିଲା । 'ଶିଖରାଣି' ଶବ୍ଦରୁ ଜଣାଯାଏ, ଏଠାରେ ଅନେକଗୁଡ଼ିଏ ଶିଖର-ଯୁକ୍ତ ମନ୍ଦିର ବିଦ୍ୟମାନ ଥିଲା । ଆଧୁନିକ ଉତ୍କଳୀୟ ମନ୍ଦିରମାନ ଶିଖରଜାତୀୟ । ପୂର୍ବେ ରାଜପ୍ରାସାଦର ହଂସଶାଳାଗୁଡ଼ିକ ମଧ୍ୟ ଶିଖରାକାରରେ ନିର୍ମିତ ହେଉଥିଲା ବୋଲି ବିଶେଷଜ୍ଞମାନଙ୍କର ମତ * । କିନ୍ତୁ ଏହା ମନ୍ଦିରମାନଙ୍କ ପ୍ରତି ବିଶେଷ ଭାବରେ ପ୍ରଯୁଜ୍ୟ । ଆଜିପର୍ଯ୍ୟନ୍ତ ଐତିହାସିକମାନଙ୍କର ଧାରଣା ଥିଲା ଯେ କୁଶାଣରାଜ କନିଷ୍କଙ୍କ ରାଜତ୍ୱ ସମୟରେ ବୌଦ୍ଧମାନେ ପ୍ରଥମେ ବୁଦ୍ଧଙ୍କ ମୂର୍ତ୍ତିପୂଜା ନିମିତ୍ତ ମନ୍ଦିର ନିର୍ମାଣ କରିଥିଲେ । ପରବର୍ତ୍ତୀ କାଳରେ ହିନ୍ଦୁମାନେ ସେମାନଙ୍କଠାରୁ ମନ୍ଦିର ନିର୍ମାଣ-ପ୍ରଣାଳୀ ଶିକ୍ଷା କରି ତାହା ପ୍ରଚଳନ କରିଥିଲେ । ହାତୀଗୁମ୍ଫା ଲେଖ ଏହି ଧାରଣା ସମ୍ପୂର୍ଣ୍ଣ ଭ୍ରମାତ୍ମକ ବୋଲି ପ୍ରମାଣ କରେ । କନିଷ୍କଙ୍କର ପ୍ରାୟ ଦୁଇ ଶତାବ୍ଦୀ ପୂର୍ବରୁ କଳିଙ୍ଗ ନଗରରେ ଦେବପୂଜା ନିମିତ୍ତ ଶିଖର ଜାତୀୟ ମନ୍ଦିରମାନ ନିର୍ମିତ ହୋଇଥିଲା । ଦେବପ୍ରିୟ ପ୍ରିୟଦର୍ଶୀ ଅଶୋକଙ୍କ ପରି ଜୈନ ଧର୍ମାବଲମ୍ବୀ କଳିଙ୍ଗ ସମ୍ରାଟ୍ ଖାରବେଳ ଅନ୍ୟାନ୍ୟ ଧର୍ମମାନଙ୍କ ପ୍ରତି ସାମ୍ୟ ଓ ମୈତ୍ରୀଭାବ ପ୍ରଦର୍ଶନ କରୁଥିଲେ । ଉକ୍ତ ଲେଖର ଷୋଡ଼ଶ ଧାଡ଼ିରୁ ଜଣାଯାଏ ଯେ ସେ ଅନ୍ୟାନ୍ୟ ଧର୍ମମାନଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ଦେଖାଉଥିଲେ

---

* Dr. P. K. Acharya's Dictionary of Hindu Artitecture.

( ସର୍ବ-ପାଷଣ୍ଡ-ପୂଜକଃ † ) ଓ ପ୍ରାଚୀନ ଦେବମନ୍ଦିରମାନଙ୍କର ସଂସ୍କାର କରିଥିଲେ ( ସର୍ବ-ଦେବାୟତନ-ସଂସ୍କାର-କାରକଃ ) । କଳିଙ୍ଗ ନଗରରେ ମଧ୍ୟ ତାଙ୍କ ରାଜତ୍ୱ ପୂର୍ବରୁ ଅନେକ ଦେବାୟତନ ବା ଦେବମନ୍ଦିର ଥିଲା । ଏଗୁଡ଼ିକ ହିନ୍ଦୁ ଦେବଦେବୀ ମନ୍ଦିର ବ୍ୟତୀତ ଅନ୍ୟ କିଛି ନୁହେ । କାରଣ ସୈନ୍ଧବ ପ୍ରଦେଶରେ ଭୂଗର୍ଭରୁ ଖୋଦିତ ହରପା ଓ ମହେଞ୍ଜୋଦାରୋ ନାମକ ଭାରତର ପ୍ରାଚୀନ ସ୍ଥାନ ଦୁଇଟିରେ ଲିଙ୍ଗ, ନାନାବିଧ ଶିବମୂର୍ତ୍ତି, ଶକ୍ତି ଓ ଅନ୍ୟାନ୍ୟ ଦେବୀ ମୂର୍ତ୍ତିମାନ ପୂଜିତ ହେଉଥିବା ନିଃସନ୍ଦେହରେ ପ୍ରମାଣିତ ହେଲାଣି । ଗୁଣକ୍ୟଙ୍କ ଅର୍ଥଶାସ୍ତ୍ରରୁ ଜଣାଯାଏ ଯେ ପ୍ରାଚୀନ ପାଟଳିପୁତ୍ର ନଗରୀରେ ଶିବ, କୁବେର, ଦୁର୍ଗା ଇତ୍ୟାଦି ବିଭିନ୍ନ ଦେବଦେବୀଙ୍କର ମନ୍ଦିର ବିଦ୍ୟମାନ ଥିଲା । ନଗର ମଧ୍ୟରେ ଦେବମନ୍ଦିର ନିର୍ମାଣ ନିମିତ୍ତ ସେ କେତେକ ନିୟମ ମଧ୍ୟ ତାଙ୍କ ଗ୍ରନ୍ଥରେ ଲିପିବଦ୍ଧ କରିଛନ୍ତି । ସାଧାରଣତଃ ବୌଦ୍ଧମନ୍ଦିରଗୁଡ଼ିକ 'ପ୍ରାସାଦ', 'ବିହାର' ଇତ୍ୟାଦି ନାମରେ କଥିତ ହୁଏ । କିନ୍ତୁ ଗୋପୁର, ଶିଖରଜାତୀୟ ଦେବାୟତନଗୁଡ଼ିକ ଯେ ହିନ୍ଦୁ ମନ୍ଦିର ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ତାହାହେଲେ ଖାରବେଳଙ୍କ ରାଜତ୍ୱ ପୂର୍ବରୁ କଳିଙ୍ଗରେ ହିନ୍ଦୁଧର୍ମ ପ୍ରଚଳିତ ଥିଲା ଓ ଅନେକ ହିନ୍ଦୁମନ୍ଦିର ମଧ୍ୟ ନିର୍ମିତ ହୋଇଥିଲା । ସେଗୁଡ଼ିକ ଜୀର୍ଣ୍ଣ ଓ ଭଗ୍ନଦଶାପନ୍ନ ହୋଇଯିବାରୁ ଉଦାରଚେତା ସକଳ ଧର୍ମପ୍ରିୟ

---

† ପାଷଣ୍ଡ ଶବ୍ଦ ଧର୍ମାବଲମ୍ବୀ ଅର୍ଥରେ ପ୍ରାଚୀନ କାଳରେ ବ୍ୟବହୃତ ହେଉଥିଲା । ଅଶୋକଙ୍କ ଅନୁଶାସନମାନଙ୍କରେ ଉକ୍ତ ଅର୍ଥରେ 'ପାଷଣ୍ଡ' ଶବ୍ଦର ବହୁଳ ବ୍ୟବହାର ଦେଖାଯାଏ ।

ଖାରବେଳ ସେଗୁଡ଼ିକ ସଂସ୍କାର କରିଥିଲେ । କଳିଙ୍ଗ-ନଗରରେ 'ବିରାଟ ସେନା-ନିବାସ'-ମାନ ବିଦ୍ୟମାନ ଥିଲା । ଏଥିରେ ଅଶ୍ୱାରୋହୀ, ଗଜାରୋହୀ, ରଥାରୋହୀ, ପଦାତି ପ୍ରଭୃତି ପ୍ରାଚୀନ ଭାରତୀୟ ଚତୁରଙ୍ଗ ସେନା ବାସ କରୁଥିଲେ । ଖାରବେଳ ନିଜର ବିରାଟ ବାହିନୀମାନଙ୍କ ପାଇଁ ରାଜଧାନୀରେ ଅସଂଖ୍ୟ ଗୃହ ନିର୍ମାଣ କରିଥିଲେ । ହାତୀଗୁମ୍ଫା ଲେଖର ବର୍ଣ୍ଣନାରୁ ଜଣାଯାଏ, ଆଜକୁ ପ୍ରାୟ ୨୧୦୦ ବର୍ଷ ପୂର୍ବେ କଳିଙ୍ଗ ନଗର ସମଗ୍ର ଭାରତବର୍ଷରେ ଦ୍ୱିତୀୟ ଅମରାବତୀ ତୁଲ୍ୟ ଗୋଟିଏ ଅପୂର୍ବ ରମଣୀୟ ନଗରୀ ରୂପେ ଖ୍ୟାତି ଲାଭ କରିଥିଲା ।

ନାଗରିକମାନଙ୍କ ଅବସ୍ଥା ବର୍ଣ୍ଣନା ବ୍ୟତୀତ ନଗର ବର୍ଣ୍ଣନା ପୂର୍ଣ୍ଣାଙ୍ଗ ହେବ ନାହିଁ । ତେଣୁ ଏହାର ସାମାନ୍ୟ ଆଲୋଚନା ଆବଶ୍ୟକ । ପ୍ରତ୍ୟେକ ରାଜଧାନୀ ପରି କଳିଙ୍ଗ ରାଜଧାନୀରେ ମଧ୍ୟ ରାଜପ୍ରାସାଦ ନଗରର ପ୍ରଧାନ କେନ୍ଦ୍ରସ୍ଥଳୀ ଥିଲା । ଏଠାକୁ ରାଜ୍ୟର ପ୍ରଜାମାନେ ଓ ନାଗରିକମାନେ ବହୁ କାର୍ଯ୍ୟ ଉପଲକ୍ଷରେ ଗମନାଗମନ କରୁଥିଲେ । ପ୍ରାଚୀନ ପାଟଳିପୁତ୍ର ପରି ଏହା ଚତୁର୍ଦ୍ଦିଗରେ ବଡ଼ ପ୍ରାଚୀର ଦ୍ୱାରା ଆବୃତ ଥିଲା । ଚତ୍ୱର ବା କ୍ରୀଡ଼ାଙ୍ଗନ, ଆରାମ (Park), ଉଦ୍ୟାନ, ବୃକ୍ଷବାଟିକା ଓ ଉପବନ ପ୍ରଭୃତି ନାଗରିକମାନଙ୍କର ବିହାରସ୍ଥଳୀ ଥିଲା । ଗମନାଗମନର ସୁବିଧା ପାଇଁ ଅନେକ ପ୍ରଶସ୍ତ ପଥ ନିର୍ମିତ ହୋଇଥିଲା । ଗଭୀର ଶୀତଳ ତଡ଼ାଗମାନ ଓ ବିରାଟ ଜଳପ୍ରଣାଳୀ ନାଗରିକ-ମାନଙ୍କର ସ୍ନାନ, ପାନ ଓ ଜଳସେଚନାଦି କାର୍ଯ୍ୟରେ ବ୍ୟବହୃତ ହେଉଥିଲା । ଗ୍ରୀଷ୍ମକାଳରେ ପ୍ରଜାମାନେ ଜଳକଷ୍ଟ ଅନୁଭବ କରୁ

ନ ଥିଲେ । ଶିଖରଶୋଭିତ ତୋରଣ-ବିଭୂଷିତ କାରୁକାର୍ଯ୍ୟ-ଖଚିତ ମନ୍ଦିରମାନଙ୍କରେ ଲୋକମାନେ ଦେବାର୍ଚ୍ଚନ ଓ ଧର୍ମାଲୋଚନା କରି ନିଜ ନିଜର ଜୀବନକୁ ପବିତ୍ର କରୁଥିଲେ । ନଗରରେ ହିନ୍ଦୁ, ଜୈନ, ବୌଦ୍ଧ ପ୍ରଭୃତି ଧର୍ମାବଲମ୍ବୀମାନେ ସୁଖରେ କାଳଯାପନ କରୁଥିଲେ ଓ ରାଜା ମଧ୍ୟ ପ୍ରତ୍ୟେକ ଧର୍ମର ଉନ୍ନତି ପାଇଁ ଯତ୍ନ କରୁଥିଲେ ।

ଦେଶ ସର୍ବଦା ବିଦେଶୀୟ ଆକ୍ରମଣ ଭୟରୁ ମୁକ୍ତ ଥିଲା । ତେଣୁ ନାଗରିକମାନେ ସୁଖ ଶାନ୍ତିରେ କାଳଯାପନ କରୁଥିଲେ । ହାତୀଗୁମ୍ଫା ଲେଖର କେତେକ ପଂକ୍ତି ପାଠକମାନଙ୍କ ମନରେ ନାଗରିକ ଜୀବନ ସମ୍ବନ୍ଧରେ ଗୋଟିଏ ଉଚ୍ଚ ଧାରଣା ଦେବ † । ରାଜା ନିଜେ ସଙ୍ଗୀତବିଦ୍ୟାରେ ନିପୁଣ ଥିଲେ ଓ ସଙ୍ଗୀତ,ବାଦ୍ୟ,ଦର୍ପ,କ୍ରୀଡ଼ା, ନୃତ୍ୟାଦି ପ୍ରଦର୍ଶନ ଦ୍ୱାରା ନାଗରିକମାନଙ୍କର ଆନନ୍ଦ ବିଧାନ କରୁଥିଲେ । ନାଗରିକମାନେ ନାନାପ୍ରକାର ଭୋଜି, ଉତ୍ସବ, ସମାଜ (ଯାତ୍ରା, କ୍ରୀଡ଼ା, କୌତୁକ, କସରତ) ଇତ୍ୟାଦିରେ ଯୋଗ

---

† ୧ । ତୃତୀୟେ ପୁନବର୍ଷେ ଗନ୍ଧର୍ବ-ବେଦ-ବୁଧଃ, ଦର୍ପନୃତ୍ୟ-ଗୀତ-ବାଦିତ୍ର-ସନ୍ଦର୍ଶନୈରୁତ୍ସବ-ସମାଜ କାରଣାଭିଶ୍ଚ କ୍ରୀଡ଼ୟନ୍ତି ନଗରୀଂ ।

୨ । ଅଭିଷିକ୍ତଶ୍ଚ ଷଷ୍ଠେ ବର୍ଷେ ରାଜଶ୍ରିୟଂ ସନ୍ଦର୍ଶୟନ୍ ସର୍ବକର ପଣାଦ୍ୟ-ନେକାନୁଗ୍ରହାନ୍ ଶତ ସହସ୍ରସଂଖ୍ୟକାନ୍ ବିସୃଜତି ପୌରଜାନପଦେ ।

୩ । ସପ୍ତମେ ଚ ବର୍ଷେ ଅହି-ଛତ୍ର-ରଥ-ହସ୍ତୀ-ତୁରଙ୍ଗଶତ-ଘଣ୍ଟାନାଂ ସର୍ବସ୍ୱ ସନ୍ଦର୍ଶନଂ ସର୍ବ ମଙ୍ଗଳାନ୍ ଚ କାରୟିତ୍ୱା ଶତ ସହସ୍ରୈଃ ।

୪ । ଅଷ୍ଟମେ ଚ ବର୍ଷେ……କଳିଙ୍ଗ ଯାତି, 'ପଲ୍ଲବ-ଭର-କଳ୍ପବୃକ୍ଷ' ହସ୍ତ-ଗଜ-ନର-ରଥୈଃ ସହ ଯାତି । (ହାତୀଗୁମ୍ଫା ଲେଖ)।

ଦେଇ ବିଶେଷ ଆନନ୍ଦ ଅନୁଭବ କରୁଥିଲେ । ସମୟ ସମୟରେ ରାଜକର୍ମଚାରୀ, ରାଜଭୃତ୍ୟ, ଗୃହସ୍ଥ, ବ୍ରାହ୍ମଣ, ବୌଦ୍ଧଶ୍ରମଣ, ଜୈନ-ଶ୍ରାବକ ପ୍ରଭୃତି ବିଭିନ୍ନ ଶ୍ରେଣୀର ଲୋକେ ବଡ଼ ବଡ଼ ଭୋଜିକୁ ନିମନ୍ତ୍ରିତ ହେଉଥିଲେ । ମଙ୍ଗଳ ଅନୁଷ୍ଠାନ ସମୟରେ ଅସି, ଛତ୍ର, ଘଟ, ପତାକାଧାରୀ ଲୋକମାନେ ଓ ଗଜ-ଅଶ୍ୱ-ରଥାରୋହୀ ସୈନ୍ୟମାନେ, ରକ୍ଷୀ ଓ ପରିଚାରବୃନ୍ଦଙ୍କ ସହ ବିରାଟ ପଟୁଆରରେ ବାହାରି ନଗର ପରିକ୍ରମା କରୁଥିଲେ । ବୌଦ୍ଧମାନଙ୍କ ମଧ୍ୟରେ ପ୍ରଚଳିତ 'ବୋଧିଦ୍ରୁମ-ପୂଜା'ର ଚିତ୍ର ସାରନାଥ, ମଥୁରା, ସାଞ୍ଚୀ, ବରହୁତ ପ୍ରଭୃତି ସ୍ତୁପମାନଙ୍କର ରେଲିଙ୍ଗରେ ଅନେକ ସ୍ଥାନରେ ଖୋଦିତ ହୋଇଅଛି । ବୌଦ୍ଧମାନଙ୍କର ବୋଧିଦ୍ରୁମ ପୂଜା ପରି ଜୈନମାନଙ୍କର 'ପଲ୍ଲବ-ଭାର-କଳ୍ପବୃକ୍ଷ'ର ପୂଜା ଗୋଟିଏ ପରମ ପବିତ୍ର ଅନୁଷ୍ଠାନ ଥିଲା । ତେଣୁ ଜୈନ ଖାରବେଳ କଳିଙ୍ଗ ନଗରରେ 'ପଲ୍ଲବ-ଭାର-କଳ୍ପବୃକ୍ଷ'ର ଚିତ୍ର ବା ମୂର୍ତ୍ତି ବିରାଟ ପଟୁଆର ସହିତ ବୁଲାଉଥିଲେ । ସେ ରାଜବିଭବ ପ୍ରଦର୍ଶନ ନିମିତ୍ତ ସମୟ ସମୟରେ ନାଗରିକ ଓ ପଲ୍ଲୀବାସୀମାନଙ୍କୁ ସମସ୍ତ ପ୍ରକାର କର ଓ ପଣ୍ୟଭାରରୁ ମୁକ୍ତ କରୁଥିଲେ ଓ ରାଜକୋଷରୁ ବହୁ ମୁଦ୍ରା ବ୍ୟୟ କରି ଲୋକମାନଙ୍କ ମଧ୍ୟରେ ଦାନ ଧର୍ମାଦି କାର୍ଯ୍ୟ ସମ୍ପନ୍ନ କରୁଥିଲେ । ସମୟ ସମୟରେ ସେ ନାଗରିକମାନଙ୍କର କୌତୂହଳ ଚରିତାର୍ଥ କରିବା ନିମିତ୍ତ ଅନେକ ପ୍ରକାର ବିସ୍ମୟୋଦ୍ଦୀପକ ବନ୍ୟ ପଶୁପକ୍ଷୀମାନ ପ୍ରଦର୍ଶନ କରୁଥିଲେ । ରାଜତ୍ୱର ଏକାଦଶ ବର୍ଷରେ ସେ ଗୋଟିଏ ବିରାଟ ସାମାଜିକ ଅନୁଷ୍ଠାନରେ କଳିଙ୍ଗର ପୂର୍ବ ରାଜାମାନଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ପ୍ରଦର୍ଶନ କରିଥିଲେ ।

ହାତୀଗୁମ୍ଫା ଲେଖର ଏହି ସମସ୍ତ ପଂକ୍ତିରୁ ସ୍ପଷ୍ଟ ଜଣାଯାଏ, ଖାରବେଳଙ୍କ ସମୟରେ କଳିଙ୍ଗ ନଗରର ଅଧିବାସୀମାନେ ପରମ ସୁଖ ଓ ଶାନ୍ତିରେ କାଳ ଯାପନ କରୁଥିଲେ । ରାଜା ଓ ପ୍ରଜାଙ୍କ ସମ୍ପର୍କ ଅତ୍ୟନ୍ତ ମଧୁମୟ ଓ ପବିତ୍ର ଥିଲା । କିନ୍ତୁ ଅତ୍ୟନ୍ତ ଦୁଃଖର ବିଷୟ, ଏହି ପ୍ରସିଦ୍ଧ ରାଜଧାନୀର ଅବସ୍ଥିତି ଆଜି ପର୍ଯ୍ୟନ୍ତ ନିର୍ଣ୍ଣୀତ ହୋଇ ନାହିଁ । ତେଣୁ ଲେଖବର୍ଣ୍ଣିତ ସମସ୍ତ ଅନୁଷ୍ଠାନ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଲାଭକରିବା ବର୍ତ୍ତମାନ ସମ୍ଭବପର ନୁହେ । ତଥାପି ଏହାର ଅବସ୍ଥିତି ପ୍ରାଚୀନ ଗ୍ରନ୍ଥ ଓ ଲେଖମାନଙ୍କ ସାହାଯ୍ୟରେ ନିର୍ଣ୍ଣୟ କରିବାକୁ ଚେଷ୍ଟା କରିଛୁ ।

**କଳିଙ୍ଗ ନଗରର ଅବସ୍ଥିତି—** ଦକ୍ଷିଣ ଓଡ଼ିଶାର ନାନାସ୍ଥାନରୁ ପ୍ରାପ୍ତ ଗଙ୍ଗବଂଶୀୟ ରାଜାମାନଙ୍କ ତାମ୍ରଶାସନ ଗୁଡ଼ିକରୁ ଜଣାଯାଏ ଯେ, 'କଳିଙ୍ଗ ନଗର' ପ୍ରଥମ ଦେବେନ୍ଦ୍ର ବର୍ମାଙ୍କ ସମୟରୁ ପ୍ରଥମ କାମାର୍ଣ୍ଣବଙ୍କ ରାଜତ୍ୱ ପର୍ଯ୍ୟନ୍ତ କଳିଙ୍ଗର ରାଜଧାନୀ ଥିଲା ଏବଂ ସେଠାରୁ ଦାନପତ୍ରମାନ ପ୍ରଦତ୍ତ ହୋଇଥିଲା । ପ୍ରଥମ ଦେବେନ୍ଦ୍ର ବର୍ମାଙ୍କ ରାଜତ୍ୱରେ ୫୧ ଗଙ୍ଗାବ୍ଦ ବା ୫୬୭ ଖ୍ରୀଷ୍ଟାବ୍ଦରେ ପ୍ରଦତ୍ତ ତାମ୍ରଶାସନରୁ ପ୍ରଥମେ କଳିଙ୍ଗ ନଗରର ନାମ ମିଳେ । ତତ୍ପୂର୍ବରୁ ଗଙ୍ଗବଂଶୀୟ ରାଜାମାନେ ପ୍ରଥମେ ସିଂହପୁର ଓ ପରେ ଦନ୍ତପୁରରୁ ତାମ୍ରଶାସନମାନ ଦାନ କରିଥିଲେ । ଏହା ବର୍ତ୍ତମାନ ନିଃସନ୍ଦେହରେ ଜଣାଯାଏ ଯେ, ୬ଷ୍ଠ ଶତାବ୍ଦୀର ମଧ୍ୟଭାଗରୁ କଳିଙ୍ଗର ରାଜଧାନୀ 'କଳିଙ୍ଗ ନଗର' ନାମରେ ଖ୍ୟାତି ଲାଭ କରିଥିଲା । ଗଙ୍ଗରାଜ ଇନ୍ଦ୍ର ବର୍ମାଙ୍କ ଦ୍ୱାରା ୧୦୬ ଗଙ୍ଗାବ୍ଦ ବା ୬୪୨ ଖ୍ରୀଷ୍ଟାବ୍ଦରେ ପ୍ରଦତ୍ତ ତାମ୍ରଶାସନରୁ ଜଣାଯାଏ ଯେ, କଳିଙ୍ଗ ନଗର ସମୁଦ୍ରକୂଳରେ

ଅବସ୍ଥିତ ଥିଲା । ଯଥା "ଜଳଧି-ଜଳ-ତରଙ୍ଗ-କର-ପଲ୍ଲବାଲିଙ୍ଗିତ-ସକଳ କଳିଙ୍ଗାବନୀ-ତଳ-ତିଳକାୟମାନାତ୍ ବିଜୟ କଳିଙ୍ଗ-ନଗରାତ୍" ଅର୍ଥାତ୍ କଳିଙ୍ଗ ରାଜ୍ୟର ତିଳକ ସ୍ୱରୂପ କଳିଙ୍ଗ ନଗରକୁ ସମୁଦ୍ର ନିଜର ତରଙ୍ଗ ରୂପକ କରପଲ୍ଲବ ଦ୍ୱାରା ଆଲିଙ୍ଗନ କରୁଥିଲା । ଏହି ନଗରଟି ସମୁଦ୍ରକୂଳବର୍ତ୍ତୀ ପ୍ରାୟ ୮୪ ଦ୍ରାଘିମା ଓ ୧୮ ଅକ୍ଷାଂଶରେ ଅବସ୍ଥିତ କୋଠୁରର ସହିତ ଚିହ୍ନିତ ହୋଇଅଛି ।

ସମୁଦ୍ରଗୁପ୍ତଙ୍କ ଦାକ୍ଷିଣାତ୍ୟ ବିଜୟ କାଳରେ ଗିରିଦୁର୍ଗ କୋଠୁର କଳିଙ୍ଗର ରାଜଧାନୀ ଥିଲା ଏବଂ ସେଠାରେ ସ୍ୱାମୀଦତ୍ତ ରାଜତ୍ୱ କରୁଥିଲେ । ମହାକବି-କାଳିଦାସ ରଘୁବଂଶର ଷଷ୍ଠ ସର୍ଗରେ କଳିଙ୍ଗର ରାଜଧାନୀ ମହେନ୍ଦ୍ରପର୍ବତର ଅନତି ଦୂରରେ ସମୁଦ୍ର କୂଳରେ ଅବସ୍ଥିତ ଥିବାର ବର୍ଣ୍ଣନା କରିଛନ୍ତି—

> ଯସ୍ମାତ୍ପୁନଃ ସଦ୍ମନ ସନ୍ନିକୃଷ୍ଟ ମନ୍ଦ୍ରଧ୍ୱନି-ତ୍ୟାଜିତଯାମତୂର୍ଯ୍ୟ,
> ପ୍ରାସାଦ ବାତାୟନ ଦୃଶ୍ୟବୀଚିଃ ପ୍ରବୋଧୟତ୍ୟର୍ଣ୍ଣବ ଏବ ସୁପ୍ତଂ ।

ଅର୍ଥାତ୍ କଳିଙ୍ଗ ରାଜପ୍ରାସାଦରୁ ସମୁଦ୍ର ଲହରୀଗୁଡ଼ିକ ଦେଖା ଯାଉଥିଲା ଏବଂ ସେଗୁଡ଼ିକର ଭୀଷଣ ଗର୍ଜନ ପ୍ରତ୍ୟେକ ଯାମରେ ବଜା ଯାଉଥିବା ତୋଳ ଶବ୍ଦକୁ ବଳି ଯାଉଥିଲା ।

ଗଙ୍ଗରାଜତ୍ୱ କାଳରେ ବହୁକାଳ ପର୍ଯ୍ୟନ୍ତ କଳିଙ୍ଗର ରାଜଧାନୀ ଥିବା 'କଳିଙ୍ଗ ନଗର' ଓ ଖାରବେଳଙ୍କ ହାତୀଗୁମ୍ଫା ଲେଖରେ ବର୍ଣ୍ଣିତ 'କଳିଙ୍ଗ ନଗର' ଏକ ଓ ଅଭିନ୍ନ ବୋଲି ଐତିହାସିକ ଶ୍ରୀଯୁକ୍ତ ବିଜୟଚନ୍ଦ୍ର ମଜୁମଦାର ମତ ପ୍ରକାଶ କରିଛନ୍ତି । କିନ୍ତୁ ଏହା ବିରୁଦ୍ଧରେ କେତେକ ଯୁକ୍ତି ପ୍ରଦତ୍ତ ହୋଇପାରେ । ପ୍ରଥମେ କଳିଙ୍ଗ ନଗର 'କଟକ' ପରି ଗୋଟିଏ ସାଧାରଣ ନାମବାଚକ ଶବ୍ଦ

(Generic term)। ଏହାର ଅର୍ଥ କଳିଙ୍ଗର ରାଜଧାନୀ। 'କଟକ' ଶବ୍ଦ ରାଜାଙ୍କର ସାମୟିକ ରାଜଧାନୀ। ଇତିହାସ ପର୍ଯ୍ୟାଲୋଚନା କଲେ ଆମ୍ଭେମାନେ ଜାଣିପାରୁ ଯେ ଶ୍ରୀଧାନ୍ୟ କଟକ, ଅମରାବତୀ କଟକ, ସାଞ୍ଚୀ କଟକ ପରି ଓଡ଼ିଶାରେ ମଧ୍ୟ ସୁବର୍ଣ୍ଣପୁର କଟକ, ମୁରସୀମ କଟକ, ବିନୀତପୁର କଟକ, ଚଉଦ୍ୱାର କଟକ, ଶିଡ଼ାନାସି କଟକ, କୀର୍ତ୍ତିବାସ କଟକ (ଭୁବନେଶ୍ୱର), ପୁରୁଷୋତ୍ତମ କଟକ (ପୁରୀ) ପ୍ରଭୃତି ଅନେକ କଟକ ଥିଲା। କଟକ ଶବ୍ଦ ରାଜଧାନୀ ରୂପେ ବ୍ୟବହୃତ ହେଉଥିବା ନଗରକୁ ବୁଝାଇଲା ପରି କଳିଙ୍ଗ ନଗର କୌଣସି ସ୍ଥାନ ବିଶେଷର ନାମ ନ ହୋଇ କଳିଙ୍ଗର ରାଜଧାନୀ ଥିବା ନଗର ବିଶେଷକୁ ବୁଝାଉଥିବ। କୋଚ୍ଚୁର ଚିଦ୍‌ଦୁର୍ଗ ପ୍ରଥମେ ବହୁକାଳ 'କଳିଙ୍ଗ ନଗର' ନାମରେ ପରିଚିତ ଥିଲା। ପରବର୍ତ୍ତୀ-କାଳରେ ପାରଳାଖେମୁଣ୍ଡି ଜମିଦାରୀ ମଧ୍ୟରେ ବଂଶଧାରା ନଦୀକୂଳରେ ଅବସ୍ଥିତ ମୁଖଲିଙ୍ଗଠାରୁ କଟକ ନଗରୀ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ 'କଳିଙ୍ଗ ନଗର' ନାମ ଧାରଣ କରିଥିଲା। ତେଣୁ ଖାରବେଳଙ୍କ ସମୟରେ କଳିଙ୍ଗର ଅନ୍ୟ କୌଣସି ଐତିହାସିକ କେନ୍ଦ୍ର ବୋଧହୁଏ ଖଣ୍ଡଗିରି ନିକଟବର୍ତ୍ତୀ କୌଣସି ଅଞ୍ଚଳ, 'କଳିଙ୍ଗ ନଗର' ବା କଳିଙ୍ଗର ରାଜଧାନୀ ଥିଲା।

ଏହା ସପକ୍ଷରେ ଅନେକ ଯୁକ୍ତି ଦିଆଯାଇପାରେ। ଅଶୋକଙ୍କ ଅନୁଶାସନରୁ ସ୍ପଷ୍ଟ ଜଣାଯାଏ ଯେ, ତାଙ୍କ ରାଜତ୍ୱକାଳରେ ତୋଷାଳୀ ବା ଆଧୁନିକ ଧଉଳିପର୍ବତର ନିକଟବର୍ତ୍ତୀ ଅଞ୍ଚଳ କଳିଙ୍ଗର ରାଜଧାନୀ ଥିଲା। ଖାରବେଳ ମୌର୍ଯ୍ୟବିଜୟର ସ୍ମୃତିକୁ ଲୋକମାନଙ୍କ ମାନସପଟରୁ ପୋଛି ଦେବାପାଇଁ ତୋଷାଳୀରେ ବା ତୋଷାଳୀ

ନିକଟରେ ନିଜର ରାଜଧାନୀ ପ୍ରତିଷ୍ଠା କରିଥିବା ସମ୍ପୂର୍ଣ୍ଣ ସମ୍ଭବପର । ଇତିହାସ ପାଠ କଲେ ଜଣାଯାଏ ଯେ, କୌଣସି ରାଜବଂଶର ପତନ ବା ପରାଜୟ ହେଲେ ବିଜୟୀ ରାଜା ବିଜିତ ରାଜାଙ୍କ ରାଜଧାନୀରେ ନିଜର ସ୍ତମ୍ଭ ପ୍ରୋଥିତ କରି ସେଠାରୁ ରାଜ୍ୟଶାସନ କରିବାକୁ ଗୌରବଜନକ ମନେକରନ୍ତି । ପୃଥ୍ୱୀରାଜଙ୍କ ମୃତ୍ୟୁପରେ ତାଙ୍କର ରାଜଧାନୀ ଦିଲ୍ଲୀହିଁ କ୍ରମାନ୍ୱୟରେ ଦାସ, ଖିଲ୍‌ଜୀ, ତୋଗଲକ, ସୟଦ, ଲୋଦୀ ଓ ମୋଗଲ ରାଜବଂଶର ରାଜଧାନୀରୂପେ ବ୍ୟବହୃତ ହୋଇଥିଲା । ସେହିପରି ସୋମବଂଶର ଶେଷ ରାଜଧାନୀ କଟକ ନଗରୀ ଉକ୍ତବଂଶର ପତନପରେ ଯଥାକ୍ରମେ ଗଙ୍ଗ, ସୂର୍ଯ୍ୟ, ପଠାଣ, ମୋଗଲ ଓ ମରହଟ୍ଟାମାନଙ୍କଦ୍ୱାରା ରାଜଧାନୀରୂପେ ବ୍ୟବହୃତ ହୋଇଥିଲା । ବ୍ରିଟିଶ ସରକାର ଓଡ଼ିଶା ଅଧିକାର ପରେ କଟକକୁ ନିଜର ରାଜଧାନୀ ରୂପେ ବ୍ୟବହାର କରି ଆସୁଅଛନ୍ତି ।

ଖଣ୍ଡଗିରି ଓ ଉଦୟଗିରିରେ ଥିବା କେତେକ ପ୍ରାଚୀନ ବ୍ରାହ୍ମୀ ଲେଖରୁ ସ୍ପଷ୍ଟ ଜଣାଯାଏ ଯେ, ଏହି ଦୁଇଟି ଶୈଳର ଅଦୂରରେ କୌଣସି ଏକ ନଗର ବିଦ୍ୟମାନ ଥିଲା । ଏହାହିଁ କଳିଙ୍ଗ ନଗର ହୋଇଥିବା ମନେ ହୁଏ ।

ଅଶୋକ ଓ ଖାରବେଳଙ୍କ ସମୟରେ କଳିଙ୍ଗରାଜ୍ୟ ଉତ୍ତରରେ ଗଙ୍ଗା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ତେଣୁ ତୋଷଳୀହିଁ ତାହାର କେନ୍ଦ୍ର ଥିଲା ଓ ସେଠାରୁ ସମଗ୍ର ରାଜ୍ୟ ଶାସନ କରିବା ସହଜ ଓ ସୁବିଧା-ଜନକ ଥିଲା । କାଳିଦାସଙ୍କ ସମୟରୁ ଓ ତତ୍‌ପରେ କ୍ରମଶଃ କଳିଙ୍ଗ ରାଜ୍ୟ ସଙ୍କୁଚିତ ହୋଇ ଋଷିକୁଲ୍ୟା ଓ ଗୋଦାବରୀ ମଧ୍ୟରେ ଆବଦ୍ଧ ରହିଲା । ତେଣୁ କୋଠୁର ଦୁର୍ଗରୁ ଉକ୍ତ ସଙ୍କୁଚିତ କଳିଙ୍ଗ

ରାଜ୍ୟ ଶାସନ କରିବା ସୁବିଧାଜନକ ହେଲା । କିନ୍ତୁ ଖାରବେଲଙ୍କ ସମୟରେ ବୋଣ୍ଠୁର ଉତ୍ତରରେ ବହୁଦୂର ପର୍ଯ୍ୟନ୍ତ ବିସ୍ତୃତ କଳିଙ୍ଗ ରାଜ୍ୟର ରାଜଧାନୀ ନ ହୋଇ ତୋଷଲି ନିକଟବର୍ତ୍ତୀ କୌଣସି ନଗରୀ କଳିଙ୍ଗର ରାଜଧାନୀ ହୋଇଥିବା ସମ୍ଭବପର ।

ବ୍ରହ୍ମପୁରାଣରେ ପ୍ରଦତ୍ତ ଏକାମ୍ରକ୍ଷେତ୍ରର ବର୍ଣ୍ଣନା * ସହିତ ହାତୀଗୁମ୍ଫା ଲେଖରେ ପ୍ରଦତ୍ତ କଳିଙ୍ଗ ନଗର ବର୍ଣ୍ଣନାର ବିଶେଷ ସାମଞ୍ଜସ୍ୟ ଦେଖାଯାଏ । ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରର ପ୍ରାୟ ଏକ ମାଇଲ ପୂର୍ବରେ ବିରାଟ ଶିଶୁପାଳ ଦୁର୍ଗର ଭଗ୍ନାବଶେଷ ଦେଖାଯାଏ । ଏହାର ଆକାର ବର୍ଗକ୍ଷେତ୍ର ପରି ଓ ପ୍ରତ୍ୟେକ ପ୍ରାଚୀର ପ୍ରାୟ ଏକ ମାଇଲ ଲମ୍ବ । ପ୍ରାଚୀରଗୁଡ଼ିକ ବଡ଼ ବଡ଼ ଇଟାରେ ତିଆରି ହୋଇଥିଲା । ଏହିପରି ଇଟା ମୌର୍ଯ୍ୟ ବା ସୁଙ୍ଗବଂଶର କୀର୍ତ୍ତିମାନଙ୍କରେ ସାଧାରଣତଃ ଦେଖାଯାଏ । ପ୍ରାଚୀରଗୁଡ଼ିକର ଧ୍ୱଂସାବଶେଷ ଭୂମି ପତ୍ତନଠାରୁ ପ୍ରାୟ ୨୦ ଫୁଟ ଉଚ୍ଚ । ପ୍ରତ୍ୟେକ ପ୍ରାଚୀରର ମଧ୍ୟଭାଗରେ ଗୋଟିଏ ଗୋଟିଏ ବିଶାଳ ଦ୍ୱାର ଥିଲା ।

---

* ଏକାମ୍ର ବୃକ୍ଷ ସ୍ତତ୍ରାସୀତ୍ ପୁରାକଲ୍ପେ ଦ୍ୱିଜୋତ୍ତମାଃ ନାମ୍ନା ତତ୍ କ୍ଷେତ୍ର-ମେକାମ୍ରକମିତିଶ୍ରୁତମ୍ । ହୃଷ୍ଟପୁଷ୍ଟଜନାକୀର୍ଣ୍ଣଂ ନରନାରୀ ସମନ୍ୱିତଂ । × × × × ଗୃହ ଗୋକୁଳ-ସମ୍ବାଧଂ ଗୋପୁରୈଶ୍ଚ ସୁଭୂଷିତଂ । ନାନାବର୍ଣ୍ଣୈଃ ସମାକୀର୍ଣ୍ଣଂ ନାନାରତ୍ନୋପଶୋଭିତମ୍ । ପୁରାଟ୍ଟାଳକ ସଂଯୁକ୍ତଂ ଶ୍ରୀଥଭିଃ ସମଳଂକୃତମ୍ । ହର୍ମ୍ମ୍ୟୈଶ୍ଚ ନୈର୍ଵି ଶୁଭ୍ରୈଃ ପ୍ରାସାଦୈ ରୁପଶୋଭିତମ୍ । ନୈକଦ୍ୱାର ସଂଯୁକ୍ତଂ ସିତ-ପ୍ରାକାର ଶୋଭିତମ୍ । ରକ୍ଷିତଂ ଶସ୍ତ୍ରସଙ୍ଘୈଶ୍ଚ ପରିଖାଭିରଳଂକୃତମ୍ । ସିତରକ୍ତୈସ୍ତଥା ପୀତୈଃ କୃଷ୍ଣଶ୍ୟାମୈଃ ସୁବର୍ଣ୍ଣକୈଃ । ସମୀରଣୋଦ୍ଧୃତାଭିଶ୍ଚ ପତାକାଭିରଳଂକୃତମ୍ ।

ନଗରର ଦ୍ୱାରଟି ବୃହତ୍ତମ ହୋଇଥିବାରୁ ଏହାହିଁ ସିଂହଦ୍ୱାର ହୋଇଥିବାର ମନେହୁଏ । ଏହି ଦୁର୍ଗ ମଧ୍ୟରୁ ମୌର୍ଯ୍ୟଯୁଗର ଗୋଟିଏ ସିଲ୍ (Seal) ମିଳିଥିଲା † । ସିଂହଦ୍ୱାରର ଅଦୂରରେ ଭାସ୍କରେଶ୍ୱର ମନ୍ଦିର ନିକଟରୁ ସ୍ୱର୍ଗୀୟ ରାଖାଲ ଦାସ ବାନର୍ଜୀ ମହାଶୟ ଗୋଟିଏ ପଥର ରେଲିଙ୍ଗ ପାଇଥିଲେ । ଏହି ରେଲିଙ୍ଗ ଦେହରେ ଖୋଦିତ ମୂର୍ତ୍ତି ମୌର୍ଯ୍ୟ ବା ସୁଙ୍ଗଯୁଗର ବୋଲି ସେ ମତ ପ୍ରକାଶ କରିଥିଲେ । ପ୍ରାୟ ଅଠ ଫୁଟ ଉଚ୍ଚ ବିଶାଳ ଭାସ୍କରେଶ୍ୱର



ସିଲ୍ ମୋହର

ଶିବଲିଙ୍ଗ ଗୋଟିଏ ଅଶୋକ ସ୍ତମ୍ଭର ଭଗ୍ନାବଶେଷ ବୋଲି ରାଜେନ୍ଦ୍ରଲାଲ ମିତ୍ର ପ୍ରଭୃତି ପ୍ରସିଦ୍ଧ ଐତିହାସିକ ସ୍ଥିର କରିଛନ୍ତି । ଶିଶୁପାଳ ଦୁର୍ଗମଧ୍ୟରୁ ପ୍ରାପ୍ତ ପ୍ରାୟ ଦଶମ ଶତାବ୍ଦୀର ଗୋଟିଏ

---

† ପୁରୀର ଶ୍ରୀଯୁକ୍ତ ଜୀବନେନ ରାୟ ଏହି Seal ନିଜ ମିଉଜିୟମରେ ରଖିଥିଲେ । ବର୍ତ୍ତମାନ ଏହା କଲିକତା ବିଶ୍ୱବିଦ୍ୟାଳୟର ମିଉଜିୟମରେ ରକ୍ଷିତ ହୋଇଅଛି ।

ସତୀସ୍ତମ୍ଭ ଓ ସପ୍ତମ ବା ଅଷ୍ଟମ ଶତାବ୍ଦୀର ମୁଗୁନି ପଥରରେ ନିର୍ମିତ ଗୋଟିଏ ଦେବୀମୂର୍ତ୍ତିର ଯଥେଷ୍ଟ ଐତିହାସିକ ଗୁରୁତ୍ୱ ଅଛି ।



ଶିଶୁପାଳ ଦୁର୍ଗରୁ ଆବିଷ୍କୃତ ପ୍ରାଚୀନ ପାତ୍ର ଓ ମାଳା

ସତୀସ୍ତମ୍ଭରେ ଖୋଦିତ ବନଦୁର୍ଗା ମୂର୍ତ୍ତି ଉପରେ ଗୋଟିଏ ଲେଖ ଓ ଦେବୀମୂର୍ତ୍ତିର ପଛ ପାଖରେ ୧୭ ଧାଡ଼ିର ଗୋଟିଏ ଲେଖ ବିଦ୍ୟମାନ । ଏତଦ୍‌ବ୍ୟତୀତ ବ୍ରହ୍ମେଶ୍ୱର ମନ୍ଦିରଠାରୁ ଶିଶୁପାଳ ଦୁର୍ଗର ବାୟୁକୋଣ ପର୍ଯ୍ୟନ୍ତ ଗୋଟିଏ ବିଶାଳ ଲମ୍ବ ସ୍ତୂପ ବିଦ୍ୟ-ମାନ । ଏହା ଗୋଟିଏ ପ୍ରାଚୀନ ପଥ ବୋଲି ସ୍ପଷ୍ଟ ଜଣାଯାଏ । ଏହା ଉପରେ ସ୍ଥାନେ ସ୍ଥାନେ ଶିଳାଲେଖ ଅଦ୍ୟାପି ଦେଖାଯାଏ । ଲେଖକଣ୍ଡିକରୁ ଜଣାଯାଏ ଯେ, ମହାଭାରତ-ବର୍ଣ୍ଣିତ ପ୍ରସିଦ୍ଧ ଶିଶୁପାଳ ରାଜା ଏହି ବିଶାଳ ଦୁର୍ଗ ନିର୍ମାଣ କରିଥିଲେ । କଳିଙ୍ଗ ସମ୍ରାଟ୍ ଖାରବେଳଙ୍କ ପରେ ଶିଶୁପାଳ ଚେଦୀବଂଶୀୟ ଥିଲେ । ତେଣୁ

ଉଭୟଙ୍କ ମଧ୍ୟରେ ସମ୍ପର୍କ ଥିବାର ମନେ ହୁଏ । ବ୍ରାହ୍ମଣ୍ୟଧର୍ମର ପୁନରୁତ୍ଥାନ ଯୁଗରେ ହିନ୍ଦୁମାନେ ପ୍ରସିଦ୍ଧ ବୌଦ୍ଧ ଓ ଜୈନକୀର୍ତ୍ତି-ଗୁଡ଼ିକ ନିଜ ଧର୍ମପୀଠରୂପେ ବ୍ୟବହାର କରି ସେଗୁଡ଼ିକର ନାମ ପରିବର୍ତ୍ତନ କରିଥିଲେ । ଉକ୍ତ ଯୁଗରେ ସୁରଭି ପର୍ବତ ଧଉଳିଗିରି; ଅଶୋକ ଅନୁଶାସନ ଥିବା ବିଶାଳ ଶୈଳଖଣ୍ଡ ଅଶ୍ୱତ୍ଥାମା ପାହାଡ଼, ଧଉଳିରେ ଥିବା ଅଶୋକ ନିର୍ମିତ ଗୁହା ସକଳ ପଞ୍ଚପାଣ୍ଡବ ଗୁମ୍ଫା ନାମ ଧାରଣ କରିଥିଲା । ବହୁ ଜୈନକୀର୍ତ୍ତିଶୋଭିତ କୁମାର ଗିରି ଓ କୁମାରୀ ଗିରି ହିନ୍ଦୁମାନଙ୍କ ଦ୍ୱାରା ଯଥାକ୍ରମେ ଖଣ୍ଡଗିରି ଓ ଉଦୟ-ଗିରି ନାମରେ ଅଖ୍ୟାତ ହୋଇଥିଲା । ଭାରତ ଇତିହାସରୁ ଏହିପରି ଅଦ୍ଭୁତ ଅନେକ ଉଦାହରଣ ଦିଆଯାଇପାରେ । ତେଣୁ କଳିଙ୍ଗ ସମ୍ରାଟ୍ ଖାରବେଳ ଲୋକଶ୍ରୁତିରେ ପୁରାଣପ୍ରସିଦ୍ଧ ଶିଶୁପାଳ ନାମ ଧାରଣ କରିଥିବା ସମ୍ପୂର୍ଣ୍ଣ ସମ୍ଭବପର ।

ଶିଶୁପାଳ ଦୁର୍ଗ ଯଦି କଳିଙ୍ଗ ନଗର ହୁଏ, ତେବେ ନନ୍ଦରାଜାଙ୍କ ରାଜତ୍ୱରେ ଖୋଦିତ ଓ ଖାରବେଳଙ୍କ ଦ୍ୱାରା ସମାପ୍ତ ପ୍ରଣାଳୀଟି କିଏ ? କପିଳସଂହିତାରୁ ଜଣାଯାଏ ଯେ, ଭୃଗୁ ନାମକ ଜନୈକ ଋଷି ନିଜର ତପଃ ପ୍ରଭାବରେ ଭାର୍ଗବୀ ନଦୀର ସୃଷ୍ଟି କରିଥିଲେ ଓ ଏହା ନଗ୍ରୀକସ୍ଥ ସିଦ୍ଧେଶ୍ୱର ମନ୍ଦିର ନିକଟରେ ମହାନଦୀରୁ ଉତ୍ପନ୍ନ ହୋଇଥିଲା । ପରେ ଦଧୀଚି ମହର୍ଷି ଏଥିରୁ ଦଧିଭଦ୍ରା ବା ଦୟାନଦୀ ଖୋଳାଇଥିଲେ । * ଭୃଗୁ ଓ ଦଧୀଚିଙ୍କ

* କଥିତା ଯା ପୁରା ରାଜନ୍ ବହୁପୁଣ୍ୟା ମହାନଦୀ, ତସ୍ୟାସ୍ତୁତନୟା ଖ୍ୟାତା ଦକ୍ଷିଣେ ଦକ୍ଷିଣଗମା । ସା ନଦୀ ଭୃଗୁଣାନୀତା ତପସା ଚ ମହାତ୍ମନା, ତତଃ ସା ଭାର୍ଗବୀ ଖ୍ୟାତା ଗୋ-ସହସ୍ର-ଫଳପ୍ରଦା । ସିଦ୍ଧେଶ୍ୱର ସମୀପାଚ୍ଚ ତଥା ସିଦ୍ଧେଶ୍ୱରାବଧି,

ତପଃ ପ୍ରଭାବରେ ଆଗତ ଭାର୍ଗବୀ ଓ ଦୟାନଦୀ ନନ୍ଦରାଜାଙ୍କ ରାଜତ୍ୱରେ ଆରମ୍ଭ ଓ ଖାରବେଳଙ୍କ ରାଜତ୍ୱରେ ସମାପ୍ତ ପ୍ରଣାଳୀ ବ୍ୟତୀତ ଅନ୍ୟ କିଛି ନୁହେ । ଏହି ପ୍ରଣାଳୀ ନିକଟରେ ଅସଂଖ୍ୟ ମନ୍ଦିର, ଗୋପୁର, ମଠ, ଶାସନ ପ୍ରତିଷ୍ଠିତ ହେବାରୁ ବ୍ରାହ୍ମଣ୍ୟଧର୍ମର ପୁନରୁତ୍ଥାନ ଯୁଗରେ କପିଳସଂହିତାର ରଚୟିତା ବୋଧହୁଏ ନନ୍ଦରାଜ ଓ ଖାରବେଳଙ୍କ ପରିବର୍ତ୍ତିରେ ଯଥାକ୍ରମେ ସ୍ୱନାମଧନ୍ୟ ଭୃଗୁ ଓ ପରିକ୍ରଯଶା ଦଧୀଚ ମହର୍ଷିଙ୍କର ନାମ ଏହା ସହିତ ସଂଯୋଗ କରି ଲୋକଚକ୍ଷୁରେ ଏହାର ମାହାତ୍ମ୍ୟ ବୃଦ୍ଧି କରିବା ପାଇଁ ଚେଷ୍ଟା କରିଥିବେ । ଏପରି ଦୃଷ୍ଟାନ୍ତ ହିନ୍ଦୁଯୁଗର ଇତିହାସରେ ବହୁଳ ଦୃଷ୍ଟିଗୋଚର ହୁଏ । କଟକଠାରୁ ବାଲିଅନ୍ତା ପର୍ଯ୍ୟନ୍ତ ପ୍ରବାହିତ ଭାର୍ଗବୀର ଅଂଶକୁ ଆଜିକାଲି ଲୋକେ କୁଆଖାଇ ବୋଲି କହନ୍ତି । 'ଖାଇ' ଶବ୍ଦ ପରିଖା, ଖାଲି ବା ପ୍ରଣାଳୀକୁ ବୁଝାଯାଏ । ତେଣୁ କୁଆଖାଇ ଶବ୍ଦରେ ନନ୍ଦରାଜାଗତ ପ୍ରଣାଳୀର ଇତିହାସ ପ୍ରଚ୍ଛନ୍ନ ଭାବରେ ନିହିତ ଥିବାର ମନେହୁଏ ।

ଅଧି ମଧ୍ୟ ହାତୀଗୁମ୍ଫା ଲେଖରେ ସ୍ପଷ୍ଟ ଲେଖାଯାଇଛି ଯେ, 'ତନସୁଲୀୟ ବାଟ ପନାଡ଼ିଂ ନଗରଂ ପବେଶୟତି' ଅର୍ଥାତ୍ ତୋଷଳୀକୁ ଯାଇଥିବା ବାଟରେ ଏହି ପ୍ରଣାଳୀଟି ଖୋଦିତ ହୋଇଥିଲା । ତୋଷଳୀ ଧଉଳିର ଦକ୍ଷିଣ ଦିଗରେ ଅବସ୍ଥିତ ଥିବାର

ଭାର୍ଗବୀ ଭୃଗୁଣାନନ୍ଦା ଗଙ୍ଗାସମ ଫଳପ୍ରଦା । ତସ୍ୟାସ୍ତୁ ଦୁହିତା ମଦ୍ୟାଂ ପ୍ରବର୍ଷେଷୁ ଭୂଷିତାମ୍ବରଂ, ବଧ୍ୟସ୍ତବେଷ୍ଟି ବଶ୍ୟାତ ଏକାମ୍ର ବନ ସନ୍ନିଧୌ । ଅନନ୍ତା ଦକ୍ଷିଣ ଯାତେଷୌ ତପଟେସ ଚ ଦଧୀଚନା । (କପିଳ ସଂହିତା )

ନିଃସନ୍ଦେହରେ ପ୍ରମାଣିତ ହୋଇଛି । ଦୟାନଦୀ ଧଉଳିର ଉତ୍ତର ଦିଗରେ ଶିଶୁପାଳ ଦୁର୍ଗ ଠାରୁ ପ୍ରାୟ ଅର୍ଦ୍ଧ ମାଇଲ ପୂର୍ବରେ ପ୍ରବାହିତ । ତେଣୁ ଏହା କଳିଙ୍ଗ ନଗରର ଜଳସେଚନ ପାଇଁ ଅତ୍ୟନ୍ତ ଉପଯୋଗୀ ହୋଇଥିବ । ଏହାର ଗତିପଥ ଦେଖିଲେ ଏକ ପ୍ରଣାଳୀ ପରି ମନେହୁଏ । ଏହି ସମତଳ ଅଞ୍ଚଳରୁ ପାର୍ବତ୍ୟ ଅଞ୍ଚଳ ମଧ୍ୟଦେଇ ପ୍ରବାହିତ ହୋଇ ପରିଶେଷରେ ଚିଲିକାରେ ମିଶିଅଛି । ଭୁବନେଶ୍ୱରଠାରୁ କାକୁଡ଼ିଆ ଗ୍ରାମ ପର୍ଯ୍ୟନ୍ତ ପାର୍ବତ୍ୟ ଅଞ୍ଚଳରେ ଏହା ନୈସର୍ଗିକ ଜଳଧାରରୂପେ ପ୍ରବାହିତ ନ ହୋଇ ମାନବ-ନିର୍ମିତ ପ୍ରଣାଳୀରୂପେ ଖୋଦିତ ହୋଇଥିବାର ମନେହୁଏ ।

ଶିଶୁପାଳ ଗଡ଼ ଗୋଟିଏ କେନ୍ଦ୍ରସ୍ଥାନରେ ଅବସ୍ଥିତ ଥିଲା ଓ ଏହାର ନୈସର୍ଗିକ ଦୃଶ୍ୟ ଅତୀବ ମନୋହର । ଅଦୂରରେ ଏହାର ଦକ୍ଷିଣକୁ ଅଶୋକଙ୍କ କୀର୍ତ୍ତିଶୋଭିତ ଧଉଳି ପର୍ବତ ( ପ୍ରାଚୀନ ସୁରଭି ପର୍ବତ ) ଓ ଇତିହାସ ପ୍ରସିଦ୍ଧ ତୋଷଳି ନଗର ବିଦ୍ୟମାନ ଥିଲା । ଏହାର ପଶ୍ଚିମକୁ ପ୍ରାୟ ତିନି ମାଇଲ ଦୂରରେ ବହୁ ଜୈନକୀର୍ତ୍ତି ଶୋଭିତ ଏବଂ ଖାରବେଳ ଓ ତାଙ୍କ ପରିବାରର ପରମ ପୂଜାସ୍ଥଳୀ କୁମାର ପର୍ବତ(ଖଣ୍ଡଗିରି) ଓ କୁମାରୀ ପର୍ବତ(ଉଦୟଗିରି) ବିଦ୍ୟମାନ ଥିଲା । ଏହି ଦୁର୍ଗସ୍ଥିତ ବିଶାଳ ପ୍ରାସାଦରୁ ସମ୍ରାଟ୍ ଖାରବେଳ ନିଜଦ୍ୱାରା ନିର୍ମିତ କୁମାର ପର୍ବତ ଶିଖର-ସ୍ଥିତ ଶ୍ରୀ ପାର୍ଶ୍ୱନାଥ ମନ୍ଦିର ଓ କୁମାରୀ ପର୍ବତ ନିକଟବର୍ତ୍ତୀ ବୈଦୁର୍ଯ୍ୟ ଚୈତ୍ୟଗୃହ ପ୍ରତି ଦୃଷ୍ଟିପାତ କରି ଭକ୍ତି-ନମ୍ର ହୃଦୟରେ ଅର୍ହତମାନଙ୍କରେ ସ୍ତୁତିଗାନ ଏବଂ ହୃଦୟରେ ଅପାର ଆନନ୍ଦ ଓ ଗୌରବ ଅନୁଭବ କରୁଥିଲେ । ଶିଶୁପାଳ ଦୁର୍ଗର ଚତୁର୍ଦ୍ଦିଗରେ ଅବସ୍ଥିତ ବିସ୍ତୀର୍ଣ୍ଣ ପ୍ରାନ୍ତର ବିରାଟ

କଳିଙ୍ଗ ସେନାର ଶିକ୍ଷାକ୍ଷେତ୍ର ଓ ନିବାସ ପାଇଁ ଉପଯୁକ୍ତ କ୍ଷେତ୍ର । ଅରଣ୍ୟାନୀ ବେଷ୍ଟିତ ଏପରି ନିସର୍ଗସୁନ୍ଦର ମୁକ୍ତ ପ୍ରାନ୍ତରରେ କଳିଙ୍ଗ ନଗର ଅବସ୍ଥିତ ଥିବା ସମ୍ପୂର୍ଣ୍ଣ ସମ୍ଭବପର ।

ଉପରୋକ୍ତ ପ୍ରମାଣମାନଙ୍କ ବଳରେ ପ୍ରାଚୀନ କଳିଙ୍ଗ ନଗର ଶିଶୁପାଳ ଦୁର୍ଗ ସହିତ ଚିହ୍ନିତ ହୋଇପାରେ । କିନ୍ତୁ ତୋଷଳି, ଶିଶୁପାଳ ଓ ଭୁବନେଶ୍ୱରରେ ଐତିହାସିକ ଭୂଖୋଦନ କାର୍ଯ୍ୟ ନ ହେବା ପର୍ଯ୍ୟନ୍ତ ଏହାର ଅବସ୍ଥିତି ନିଃସନ୍ଦେହରେ ପ୍ରମାଣିତ ହୋଇ ନ ପାରେ ।

---

## ଚତୁର୍ଥ ଅଧ୍ୟାୟ

# ଉତ୍କଳରେ ଜୈନଧର୍ମ ପ୍ରଚାର

ଉତ୍କଳରେ ଜୈନଧର୍ମ ପ୍ରଚାରର ସମୟ ଆଜି ପର୍ଯ୍ୟନ୍ତ ସ୍ଥିରରୂପେ ନିର୍ଣ୍ଣୀତ ହୋଇନାହିଁ । ଏ ବିଷୟରେ ଭାରତୀୟ ତଥା ଉତ୍କଳୀୟ ଐତିହାସିକମାନେ ବିଶେଷ ଆଲୋଚନା କରି ନାହାନ୍ତି । ତେଣୁ ଏ ବିଷୟ ଆଲୋଚନା କରିବା ପାଇଁ କିମ୍ବଦନ୍ତୀ, ଶିଳ୍ପ ଓ ଲେଖମାନଙ୍କ ଉପରେ ନିର୍ଭର କରିବାକୁ ହେବ । ଇକ୍ଷ୍ୱାକୁବଂଶ ତୀର୍ଥଙ୍କର ପାର୍ଶ୍ୱନାଥ ଐତିହାସିକ ଜୈନଧର୍ମର ପ୍ରବର୍ତ୍ତକ । ବାରାଣସୀ ନୃପତି ଅଶ୍ୱସେନ ତାଙ୍କର ପିତା ଓ ବାମା ଦେବୀ ତାଙ୍କର ମାତା । ସେ ଶତବର୍ଷ ପରମାୟୁ ଭୋଗ କରି ବିହାର ପ୍ରଦେଶସ୍ଥ ପରେଶନାଥ ପର୍ବତରେ ନିର୍ବାଣ ଲାଭ କରିଥିଲେ । କିମ୍ବଦନ୍ତୀରୁ ଜଣାଯାଏ ଯେ, ସେ ଉତ୍କଳ ଓ କଳିଙ୍ଗ ଦେଶରେ ନିଜର ଧର୍ମମତ ପ୍ରଚାର କରିଥିଲେ । ଏ କିମ୍ବଦନ୍ତୀ ସପକ୍ଷରେ ନିମ୍ନଲିଖିତ ଯୁକ୍ତିମାନ ଦିଆ ଯାଇପାରେ ।

ପାର୍ଶ୍ୱନାଥ ମହାବୀର ସ୍ୱାମୀଙ୍କର ଦୁଇଶ ବର୍ଷ ପୂର୍ବେ ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତାବ୍ଦୀରେ ଆବିର୍ଭୂତ ହୋଇଥିଲେ । ତାଙ୍କ ସମୟରେ ଉତ୍କଳରେ ବୈଦିକ ଆର୍ଯ୍ୟମାନଙ୍କର ପ୍ରାଧାନ୍ୟ ସ୍ଥାପିତ ହୋଇଥିବାର ଜଣାଯାଏ ନାହିଁ । ଯେଉଁ କେତେକ ବୈଦିକ ଆର୍ଯ୍ୟ ଏଠାରେ ବସତି ସ୍ଥାପନ କରିଥିଲେ, ସେମାନେ ପ୍ରାଚୀନ ବୈଦିକ କେନ୍ଦ୍ରମାନଙ୍କ ସହିତ କାଳକ୍ରମେ ସମ୍ପର୍କଚ୍ୟୁତ ହୋଇ ପତିତ ହୋଇ-ଥିଲେ । ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀରେ ରଚିତ ବୌଧାୟନ ଧର୍ମସୂତ୍ରରେ ବଙ୍ଗ ଓ କଳିଙ୍ଗରେ ଆର୍ଯ୍ୟମାନଙ୍କ ବସତି ସ୍ଥାପନ କରିବା ପାଇଁ ନିଷେଧ କରା ଯାଇଥିଲା ଓ ଯେଉଁମାନେ ଏଠାରେ ସ୍ଥାୟୀ ଅଧିବାସୀ-ରୂପେ ରହୁଥିଲେ ସେମାନେ ପତିତ ବୋଲି ପରିଗଣିତ ହେଉଥିଲେ । ଖ୍ରୀ: ପୂ: ଦ୍ୱିତୀୟ ଶତାବ୍ଦୀରେ ରଚିତ ମନୁ-ସ୍ମୃତି ଗ୍ରନ୍ଥରୁ ମଧ୍ୟ ଜଣାଯାଏ ଯେ, ଅଙ୍ଗ, ବଙ୍ଗ, କଳିଙ୍ଗ (ଉତ୍କଳ) ଦେଶକୁ ତୀର୍ଥଯାତ୍ରା ବ୍ୟତୀତ ଅନ୍ୟ କୌଣସି ଉଦ୍ଦେଶ୍ୟରେ ଗଲେ ପୁନର୍ବାର ସଂସ୍କାର କରିବାକୁ ହେଉଥିଲା । ଏଥିରୁ ଜଣାଯାଏ ଯେ, ମନୁଙ୍କ ଆବିର୍ଭାବ କାଳ ପର୍ଯ୍ୟନ୍ତ ଏଠାରେ ବୈଦିକ ଧର୍ମର ଆଧିପତ୍ୟ ବିସ୍ତୃତ ହୋଇ ନ ଥିଲା । ତେଣୁ ଅବୈଦିକ ଜୈନଧର୍ମ ଯେ ଏ ଲୋକମାନଙ୍କ ମଧ୍ୟରେ ବିଶେଷ ଆଦର ଲାଭ କରିଥିବ, ଏଥିରେ କୌଣସି ସନ୍ଦେହ ନାହିଁ । ବେଦ-ବିରୋଧୀ ଜୈନଧର୍ମ ମଗଧ, ଅଙ୍ଗ, ବଙ୍ଗ ଓ କଳିଙ୍ଗରେ ବିଶେଷ ଆଦୃତ ହୋଇଥିବାର ଜୈନଧର୍ମ-ଗ୍ରନ୍ଥମାନଙ୍କରୁ ଜଣାଯାଏ ।

ଦ୍ୱିତୀୟତଃ ପାର୍ଶ୍ୱନାଥଙ୍କ ସମ୍ବନ୍ଧରେ କିମ୍ବଦନ୍ତୀ ଆଜି ପର୍ଯ୍ୟନ୍ତ ଲୋକମାନଙ୍କ ମଧ୍ୟରେ ପ୍ରଚଳିତ ଅଛି । କେତେକ ଐତିହାସିକ

ଖଣ୍ଡଗିରି ଶିଖର ପ୍ରଦେଶରେ ନିର୍ମିତ ପାର୍ଶ୍ୱନାଥ ମନ୍ଦିର ଅଳ୍ପ-ଦିନର ବୋଲି ସ୍ଥିର କରି ଏ କିମ୍ବଦନ୍ତୀକୁ ଅସତ୍ୟ ବୋଲି କହନ୍ତି । କିନ୍ତୁ ମନ୍ଦିର ଅପ୍ରାଚୀନ ହେଲେହେଁ ଶିଳାଲେଖରୁ ସ୍ପଷ୍ଟ ଜଣାଯାଏ ଯେ, ଏଠାରେ ଖ୍ରୀଷ୍ଟୀୟ ୭ମ ଶତାବ୍ଦୀରେ ସୁଦ୍ଧା ପାର୍ଶ୍ୱନାଥଙ୍କ ମନ୍ଦିର ବିଦ୍ୟମାନ ଥିଲା । ଏହି ନୂତନ ମନ୍ଦିରଟି ସେହି ପ୍ରାଚୀନ ମନ୍ଦିରର ଧ୍ୱଂସସ୍ତୂପ ଉପରେ ନିର୍ମିତ ହୋଇଛି । ଉଦ୍ୟୋତ କେଶରୀଙ୍କ ପଞ୍ଚମ ବର୍ଷରେ ଲିଖିତ ନବମୁନି ଗୁମ୍ଫା ଲେଖରେ * 'ଶ୍ରୀ ପାର୍ଶ୍ୱନାଥସ୍ୟ' ୬ଟି ଅକ୍ଷର ପରିଷ୍କାର ଭାବରେ ଅଛି ଏବଂ ଏହି ପାଠ ସର୍ବବାଦିସମ୍ମତ । ଯଶନନ୍ଦୀ ଜଣଙ୍କର ନାମ । ଜୈନଗ୍ରନ୍ଥରେ ଅନେକ ଯଶନନ୍ଦୀଙ୍କର ନାମ ଦେଖାଯାଏ । ଯଶନନ୍ଦୀ ପାର୍ଶ୍ୱନାଥଙ୍କ କର୍ମରେ ( ସେବା କାର୍ଯ୍ୟ ) ନିଯୁକ୍ତ ହୋଇଥିବାର ରାଖାଲ ବାବୁ କହନ୍ତି । ତାହାହେଲେ ଏହା ନିଶ୍ଚୟ ଯେ, ଖ୍ରୀଷ୍ଟୀୟ ୭ମ ଶତାବ୍ଦୀ ବା ଉଦ୍ୟୋତ କେଶରୀଙ୍କ ରାଜତ୍ୱର ବହୁକାଳ ପୂର୍ବରୁ କୁମାର ପର୍ବତରେ ( ଖଣ୍ଡଗିରି ) ପାର୍ଶ୍ୱନାଥଙ୍କ ମନ୍ଦିର ବିଦ୍ୟମାନ ଥିଲା । ଉଦ୍ୟୋତ କେଶରୀ ଏହାର ଜୀର୍ଣ୍ଣସଂସ୍କାର କରିଥିଲେ ବା ଏଠାରେ ନୂତନ ମନ୍ଦିର ନିର୍ମାଣ କରିଥିଲେ । ତେଣୁ ଏହି କିମ୍ବଦନ୍ତୀ ସତ୍ୟ ବୋଲି ମନେହୁଏ । ଏହି ପ୍ରାଚୀନ ମନ୍ଦିରର

---

*୧ମ ଧାଡ଼ି—ଶ୍ରୀ ଉଦ୍ୟୋତକେଶର—ବିଜୟ ରାଜ୍ୟ-ସଂବତ୍ ୫
୨ୟ ଧାଡ଼ି—ଶ୍ରୀ କୁମାର ପର୍ବତ ସ୍ଥାନେ ଜୀର୍ଣ୍ଣ ବାପୀ, ଜୀର୍ଣ୍ଣ ଈଶାନ
୩ୟ ଧାଡ଼ି—ଉଦ୍ୟୋତିତ । ତସ୍ମିନ୍ ସ୍ଥାନେ ଚତୁର୍ବିଂଶତି ତୀର୍ଥଙ୍କରାଃ
୪ର୍ଥ ଧାଡ଼ି—ସ୍ଥାପିତାଃ । ପ୍ରତିଷ୍ଠାକାଳେ ସ୍ଥିର × × ଉପ ଯଶନନ୍ଦନ୍
୫ମ ଧାଡ଼ି—× × × × × * (ଶ୍ରୀ ପାର୍ଶ୍ୱନାଥସ୍ୟ) କର୍ମଶ୍ୟାତ ।

ଭଗ୍ନାବଶେଷ ଷ୍ଟାର୍ଲିଙ୍ଗ୍ ସାହେବ ୧୮୨୨ ଖ୍ରୀଷ୍ଟାବ୍ଦରେ ଦେଖିଥିବାର ତାଙ୍କ ଗ୍ରନ୍ଥରେ ଲେଖିଛନ୍ତି ।

ଭୃତୀୟତଃ ଉଦୟଗିରିର ରାଣୀହଂସପୁର ଉପର ମହଲାରେ ଖୋଦିତ ଦୃଶ୍ୟାବଳୀ ଯଥାକ୍ରମେ କାନ୍ୟକୁବ୍ଜ ରାଜକନ୍ୟା ପ୍ରଭାବତୀଙ୍କର ସହଚରୀଗଣ ସହିତ ଉପବନ ବିହାର, କଳିଙ୍ଗର ଯବନ ରାଜାଙ୍କ ଦ୍ୱାରା ପ୍ରଭାବତୀ ହରଣ, ମୃଗୟାରତ ପାର୍ଶ୍ୱନାଥଙ୍କ ଦ୍ୱାରା ଶତ୍ରୁହସ୍ତରୁ ପ୍ରଭାବତୀଙ୍କ ଉଦ୍ଧାର, ଉକ୍ତ କାର୍ଯ୍ୟର ପୁରସ୍କାର ସ୍ୱରୂପ ରାଜକନ୍ୟାଙ୍କ ସହିତ ପାର୍ଶ୍ୱନାଥଙ୍କ ବିବାହ, ବିବାହକାଳୀନ ଶୋଭାଯାତ୍ରା ଓ ଉତ୍ସବ ପ୍ରଭୃତି ପାର୍ଶ୍ୱନାଥଙ୍କ ଜୀବନର ଓ ଯୌବନ ସମୟର କେତେକ ଘଟଣା ସହିତ ଚିହ୍ନିତ ହୋଇଅଛି । ଖାରବେଳଙ୍କ ପୂର୍ବରୁ କଳିଙ୍ଗ ଦେଶରେ ପାର୍ଶ୍ୱନାଥଙ୍କ ମାହାତ୍ମ୍ୟ ବିଶେଷ ଭାବରେ ପ୍ରଚଳିତ ଥିଲା । ଜୈନ ସମ୍ରାଟ୍ ଖାରବେଳ ସର୍ବଜନ ପ୍ରଚଳିତ ପାର୍ଶ୍ୱନାଥଙ୍କ ଜୀବନର ଘଟଣାବଳୀକୁ ପ୍ରସ୍ତରଗାତ୍ରରେ ଖୋଦନ କରି ଅମର କରିଥିଲେ । ପଣ୍ଡିତ ବିନାୟକ ମିଶ୍ରଙ୍କ ମତରେ—"ମହାବୀରଙ୍କ ସମୟରେ ଜୈନମାନେ ପଥରରେ ନାଗ ମୂର୍ତ୍ତି ଗଢ଼ି ତାହାକୁ ପାର୍ଶ୍ୱନାଥ ନାମରେ ପୂଜା କରୁଥିଲେ । ପାର୍ଶ୍ୱନାଥଙ୍କୁ ପୁରୁଷୋତ୍ତମ ବୋଲି କହୁଥିଲେ । କଳିଙ୍ଗର ରାଜା ଏହି ପୁରୁଷୋତ୍ତମଙ୍କ ନାଗମୂର୍ତ୍ତି ଇନ୍ଦ୍ରନୀଳମଣିରେ ଗଢ଼ାଇ ପୁରୀରେ ଗୋଟିଏ ଦେଉଳ ତୋଳାଇ ତହିଁରେ ବସାଇଥିଲେ ।" ଏ ସମସ୍ତ ବିଷୟ ଆଲୋଚନା କଲେ ମହାବୀରଙ୍କ ପୂର୍ବରୁ କଳିଙ୍ଗରେ ଜୈନଧର୍ମ ପ୍ରଚଳିତ ହୋଇଥିବାର ସ୍ଥିର କରାଯାଇପାରେ ।

**ମହାବୀର ଓ ଉତ୍କଳରେ ଜୈନଧର୍ମ—** ମହାବୀରଙ୍କ ଦ୍ୱାରା କଳିଙ୍ଗରେ ଜୈନଧର୍ମ ପ୍ରବର୍ତ୍ତିତ ହୋଇଥିବା କେତେକ ଜୈନଗ୍ରନ୍ଥରୁ ଜଣାଯାଏ । ଜୈନ 'ହରିବଂଶ ପୁରାଣ'ରେ ଲେଖାଅଛି ଯେ, ମହାବୀର ବର୍ଦ୍ଧମାନ କଳିଙ୍ଗରେ ନିଜର ଧର୍ମ ପ୍ରଚାର କରିଥିଲେ । ଜୈନଗ୍ରନ୍ଥ 'ହରିଭଦ୍ରୀୟ ବୃତ୍ତି' ମତରେ ତତ୍କାଳୀନ କଳିଙ୍ଗର ରାଜା ମହାବୀରଙ୍କ ପିତାଙ୍କର ଜଣେ ପରମ ବନ୍ଧୁ ଥିଲେ । ମହାବୀର ପିତାଙ୍କ ବନ୍ଧୁଙ୍କର ସାଦର ଆହ୍ୱାନରେ କଳିଙ୍ଗରେ ନିଜର ଧର୍ମମତ ପ୍ରଚାର କରିଥିଲେ । ଏ ଦୁଇଟି ଗ୍ରନ୍ଥରୁ ଜଣାଯାଏ ଯେ, ଜୈନଧର୍ମ ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀରେ କଳିଙ୍ଗ ରାଜାଙ୍କର ପୃଷ୍ଠପୋଷକତା ଲାଭ କରି ଉକ୍ତ ଦେଶରେ ପ୍ରବର୍ତ୍ତିତ ହୋଇଥିଲା । ଅନ୍ୟ ଏକ ଦିଗରୁ ବିଚାର କଲେ ଏହାର ସତ୍ୟତା ଜଣାଯାଏ । କଳିଙ୍ଗ ସମ୍ରାଟ୍ ଖାରବେଳଙ୍କ ପ୍ରସିଦ୍ଧ ହାତୀଗୁମ୍ଫା ଲେଖର ତ୍ରୟୋଦଶ ଧାଡ଼ି * ପାଠରୁ କଳିଙ୍ଗ ବା ଉତ୍କଳରେ ଜୈନଧର୍ମ ପ୍ରଚାରର ଇତିହାସ ସୁସ୍ପଷ୍ଟ ହୁଏ । ପ୍ରଥମତଃ ନନ୍ଦ ରାଜତ୍ୱ ପୂର୍ବରୁ କଳିଙ୍ଗରେ ଜୈନଧର୍ମ ପ୍ରଚଳିତ ହୋଇଥିଲା ଓ ଅନେକ ଲୋକ ଜୈନଧର୍ମାବଲମ୍ବୀ ଥିଲେ । ଦ୍ୱିତୀୟତଃ କଳିଙ୍ଗ ରାଜ୍ୟରେ ଜଣେ ଜିନ ଆବିର୍ଭୂତ ହୋଇ ସ୍ୱଧର୍ମ ପ୍ରଚାର କରିଥିଲେ, କଳିଙ୍ଗର ଲୋକମାନେ ସେହି କାଳିଙ୍ଗ ଜିନଙ୍କୁ ପୂଜା କରୁଥିଲେ । ନନ୍ଦରାଜ କଳିଙ୍ଗ ଆକ୍ରମଣ କରି କଳିଙ୍ଗବାସୀଙ୍କ ଆଦରର ବସ୍ତୁ କାଳିଙ୍ଗ ଜିନାସନଙ୍କୁ ସ୍ୱରାଜ୍ୟ ଅଙ୍ଗ-ମଗଧକୁ

---

* "ଦ୍ୱାଦଶେଚ ବର୍ଷେ × × × × ମାଗଧାନାଂ ରାଜ୍ଞଂ ବହସ୍ପତି ମିତଂ ପାଦେ ବଦାପୟତି । ନନ୍ଦରାଜନୀତଂ କାଳିଙ୍ଗ ଜିନାସନଂ ଅଙ୍ଗ ମଗଧେବସୁଃ ନୟତି ଗାଦାପୟତି କୃତ୍ସ୍ନଗଜ ସେନାବାହନ ସହସ୍ରୈଃ ।"

ଘୋଷିତ ଯାଇଥିଲେ । ଏହା କଳିଙ୍ଗ ଲୋକମାନଙ୍କର ଉପରେ ଗର୍ବର ବସ୍ତୁ ଥିଲା, ତାହା ହାତୀଗୁମ୍ଫା ଲିପିରୁ ସ୍ପଷ୍ଟ ଜଣାଯାଏ । ଖାରବେଳ ମଗଧ ଜୟ ପରେ ସେହି କାଳିଙ୍ଗ ଜିନାସନକୁ ହସ୍ତି-ଗଜ-ନର-ରଥ ସେନା ସମଭିବ୍ୟାହାରରେ ବିଜୟମଦ-ମତ୍ତ ହୋଇ ଫେରାଇ ଆଣିଥିଲେ ।

ଲେଖ ବର୍ଣ୍ଣିତ 'ନନ୍ଦରାଜ' ନନ୍ଦବଂଶୀୟ ମହାପଦ୍ମନନ୍ଦଙ୍କୁ ବୁଝାଉଥିବା ଅନେକ ପ୍ରସିଦ୍ଧ ଐତିହାସିକ ସ୍ୱୀକାର କରିଅଛନ୍ତି । ତାହାହେଲେ ବର୍ତ୍ତମାନ ନିଃସନ୍ଦେହରେ କୁହାଯାଇ ପାରେ ଯେ, ମହାପଦ୍ମନନ୍ଦଙ୍କ ପୂର୍ବରୁ ଅର୍ଥାତ୍ ଖ୍ରୀ: ପୂ: ୪ର୍ଥ ଶତାବ୍ଦୀ ପୂର୍ବରୁ କଳିଙ୍ଗରେ ଜୈନଧର୍ମ ପ୍ରଚଳିତ ହୋଇଥିଲା ।

ଲେଖବର୍ଣ୍ଣିତ କାଳିଙ୍ଗଜିନଙ୍କ ସମ୍ବନ୍ଧରେ କୌଣସି ବିଶ୍ୱାସ-ଯୋଗ୍ୟ ବୃତ୍ତାନ୍ତ ମିଳେ ନାହିଁ । ଚତୁର୍ବିଂଶତି ତୀର୍ଥଙ୍କରଙ୍କ ମଧ୍ୟରୁ କୌଣସି ତୀର୍ଥଙ୍କର କଳିଙ୍ଗରେ ଜନ୍ମ ହୋଇଥିବାର ଜଣାଯାଏ ନାହିଁ । ତଥାପି ଅନେକ ଐତିହାସିକ ଜୈନ ତୀର୍ଥଙ୍କରଙ୍କ ଜନ୍ମସ୍ଥାନମାନଙ୍କର ଆଧୁନିକ ସ୍ଥାନ ନିର୍ଦ୍ଦେଶ ବିଷୟରେ ସନ୍ଦିହାନ । ସ୍ୱର୍ଗୀୟ ରାଖାଲ୍ ଦାସ ବାନର୍ଜୀ ଓ ସ୍ୱର୍ଗୀୟ କାଶୀପ୍ରସାଦ ଜୟସ୍ୱାଲ ଲେଖବର୍ଣ୍ଣିତ କାଳିଙ୍ଗଜିନଙ୍କୁ ଦଶମ ତୀର୍ଥଙ୍କର ଶୀତଳନାଥଙ୍କ ସହିତ ଚିହ୍ନିତ କରିଛନ୍ତି । ସେ ଭଦ୍ଦିଲପୁରରେ (ଭଦ୍ରପୁର) ଜନ୍ମଗ୍ରହଣ କରିଥିଲେ । ଏମାନେ ଭଦ୍ରପୁରକୁ କଳିଙ୍ଗ ରାଜ୍ୟର ଗୋଦାବରୀ ନିକଟବର୍ତ୍ତୀ (ଆଧୁନିକ ଗୋଦାବରୀ ଜିଲ୍ଲା ଅନ୍ତର୍ଗତ) ଭଦ୍ରାଚଳ ସହିତ ଚିହ୍ନିତ କରିଛନ୍ତି । କିନ୍ତୁ ଏହା ଆଜି ପର୍ଯ୍ୟନ୍ତ ଅକାଟ୍ୟ ସତ୍ୟରୂପେ ପ୍ରମାଣିତ ହୋଇନାହିଁ । ତେଣୁ କାଳିଙ୍ଗଜିନ

କଳିଙ୍ଗ ଦେଶୀୟ ନନ୍ଦ ରାଜତ୍ୱର ପୂର୍ବବର୍ତ୍ତୀ ଜଣେ ପ୍ରଧାନ ଜୈନ ପୃଷ୍ଠରକ୍ଷ ହେବା ସମ୍ପୂର୍ଣ୍ଣ ସମ୍ଭବପର ।

ଖାରବେଳଙ୍କ ପୂର୍ବରୁ କଳିଙ୍ଗରେ ଜୈନଧର୍ମ ସମ୍ବନ୍ଧରେ ବର୍ତ୍ତମାନ ଆଲୋଚନା କରିବା ଆବଶ୍ୟକ । ଅଶୋକଙ୍କ ପୂର୍ବରୁ ଜୈନଧର୍ମ କଳିଙ୍ଗରେ ପ୍ରବଳ ହୋଇଥିବାର ଜଣାଗଲା । ଅଶୋକ କଳିଙ୍ଗ-ଯୁଦ୍ଧ ପରେ କଳିଙ୍ଗ ରାଜ୍ୟକୁ ନିଜର ସାମ୍ରାଜ୍ୟଭୁକ୍ତ କରିଥିଲେ ଏବଂ ଏଠାରେ ବୌଦ୍ଧଧର୍ମର ବିଶେଷ ପ୍ରଚାର ହୋଇଥିବା କଳିଙ୍ଗାନୁଶାସନଦ୍ୱୟରୁ ଜଣାପଡ଼େ । ବୌଦ୍ଧଧର୍ମର ପ୍ରବଳ ଗତି ସମ୍ମୁଖରେ ଅଶୋକଙ୍କ ସମୟରେ କଳିଙ୍ଗ ତଥା ସମଗ୍ର ଭାରତବର୍ଷରେ ଅନ୍ୟାନ୍ୟ ଧର୍ମର ଗତି ଶିଥିଳ ହୋଇ ପଡ଼ିଥିଲା । କିନ୍ତୁ ଅଶୋକଙ୍କ ମୃତ୍ୟୁ ପରେ ବିରାଟ ମୌର୍ଯ୍ୟସାମ୍ରାଜ୍ୟ ଖଣ୍ଡବିଖଣ୍ଡିତ ହୋଇଥିଲା ଓ ଅନ୍ୟାନ୍ୟ ଲୁପ୍ତଗତ ଧର୍ମମାନ ପୁନଶ୍ଚ ଜୀବନ୍ତ ସ୍ରୋତରେ ଧାବିତ ହେଲେ । ଖାରବେଳ ଚେତବଂଶ ସମ୍ଭୂତ ଥିଲେ । କଲିକତା ବିଶ୍ୱବିଦ୍ୟାଳୟ ଅଧ୍ୟାପକ ଶ୍ରୀଯୁକ୍ତ ବେଣୀମାଧବ ବରୁଆ ହାତୀଗୁମ୍ଫା ଲେଖର "ତୃତୀୟ-ପୁରୁଷ-ଯୁଗେ" ଶବ୍ଦର ବିଶଦ୍‌ବ୍ୟାଖ୍ୟା କରିଛନ୍ତି । ଏଥିରୁ ଜଣାଯାଏ ଯେ, ଖାରବେଳ ଚେତବଂଶର ପଞ୍ଚମ ରାଜା ଥିଲେ । ତାଙ୍କ ପୂର୍ବବର୍ତ୍ତୀ ପ୍ରତ୍ୟେକ ରାଜା ଅନ୍ତତଃ ୨୦ ବର୍ଷ ରାଜତ୍ୱ କରିଥିଲେ । ଖାରବେଳଙ୍କ ୮୦ ବର୍ଷ ପୂର୍ବରୁ ଅର୍ଥାତ୍ ପ୍ରାୟ ଖ୍ରୀ: ପୂ: ୨୦୦+୮୦=ଖ୍ରୀ: ପୂ: ୨୮୦ ଅବ୍ଦରୁ କଳିଙ୍ଗରେ ଚେତବଂଶ ରାଜତ୍ୱ କରିଥିଲେ । ସେମାନେ ଜୈନ ଥିବାର

ହାତୀଗୁମ୍ଫା ଲେଖରୁ ଜଣାଯାଏ । * ତାଙ୍କର ଚତୁର୍ଥ ବର୍ଷର ବୃତ୍ତାନ୍ତରୁ ଜଣାଯାଏ ଯେ, ଖାରବେଳ ସ୍ୱବଂଶାନୁସୃତ ଧର୍ମ ଓ ନୀତି ଅନୁଯାୟୀ କଳିଙ୍ଗ ରାଜ୍ୟର ଲୋକମାନଙ୍କୁ ପାଳନ କରୁଥିଲେ ଏବଂ ବିଦ୍ୟାଧର ବାସସ୍ଥଳୀ ଅରହତ-ପୁରକୁ କଳିଙ୍ଗର ସ୍ୱବଂଶୀୟ ପୂର୍ବ ରାଜାମାନଙ୍କ ପରି ପାଳନ କରିଥିଲେ । ଧର୍ମକୁଟ ବା ରାଜଧର୍ମକୁ ଐତିହାସିକ ବରୁଆ ଜୈନଧର୍ମ ବୋଲି ଗ୍ରହଣ କରିଅଛନ୍ତି । ଅରହତ-ପୁର ଶବ୍ଦରୁ ସ୍ପଷ୍ଟ ଜଣାଯାଏ ଯେ, ଏହା ଜୈନ ଅର୍ହତ (ସାଧକ)ଙ୍କର ନିବାସ ସ୍ଥଳୀ । ବଂଶ ପରମ୍ପରା ଅନୁସୃତ ପନ୍ଥା ତ୍ୟାଗ କରି ମୌର୍ଯ୍ୟ ସମ୍ରାଟ୍ ଅଶୋକ ନୂତନ ଧର୍ମମାର୍ଗ ଅବଲମ୍ବନ କରିଥିଲେ । ଏ କଥା ତାଙ୍କର ଶିଳା ଲେଖ ସକଳ ପାଠ କଲେ ଜଣାଯାଏ । କିନ୍ତୁ ହାତୀଗୁମ୍ଫା ଲେଖରୁ ଜଣାଯାଏ ଯେ, ଖାରବେଳ କୁଳଧର୍ମର ପରିପାଳନ, ଉନ୍ନତି ଓ ବ୍ୟାପ୍ତି କଲେ ବିପୁଳ ପ୍ରୟାସ କରିଥିଲେ । ତେଣୁ ଏହା ନିଶ୍ଚୟ ଜୈନଧର୍ମ ଚେତବଂଶର ରାଜଧର୍ମ ଥିଲା । ଏହି ରାଜବଂଶର ସହାୟତା ଲାଭ କରି ଜୈନଧର୍ମ ଖ୍ରୀ: ପୂ: ଦ୍ୱିତୀୟ ଶତାବ୍ଦୀଠାରୁ ଉତ୍କଳରେ ବିଶେଷ ଭାବରେ ପ୍ରଚଳିତ ହୋଇଥିଲା ।

ଖାରବେଳଙ୍କ ପୂର୍ବରୁ ଉତ୍କଳର ଅନେକ ସ୍ଥାନ ଜୈନମାନଙ୍କର ପ୍ରଧାନ ତୀର୍ଥରୂପେ ପରିଗଣିତ ହୋଇଥିଲା । ଅରହତ-ପୁର ବିଷୟ ପୂର୍ବରେ ଲେଖା ଯାଇଅଛି । କୁମାରଗିରି (ଖଣ୍ଡଗିରି) ଓ କୁମାରୀଗିରି (ଉଦୟଗିରି) ପର୍ବତ ଦୁଇଟି ଜୈନ-

* ବିଦ୍ୟାଧରାଧିବାସଂ ଅରହତ ପୁରଂ (ବଂ) କଳିଙ୍ଗ ପୂର୍ବ ରାଜାନାଂ ଧର୍ମେଣ ବା ନୀତିନା ବା ପ୍ରଶାସୟନ୍ତି (ସର୍ବତ୍ର ଧର୍ମକୂଟେନ)—ମୂଳର ସଂସ୍କୃତାନୁବାଦ ।

ମାନଙ୍କର କେନ୍ଦ୍ର ଥିଲା । ହାତୀଗୁମ୍ଫା ଲେଖ ଓ ଅବଶିଷ୍ଟ ଅନ୍ୟାନ୍ୟ ପ୍ରାଚୀନ ବ୍ରାହ୍ମୀ ଲେଖମାନଙ୍କର ବିଚାର କଲେ ଜଣାଯାଏ ଯେ, ଏଠାରେ କଳିଙ୍ଗର ନାନାସ୍ଥାନରୁ ଆଗତ ଜୈନ ଅର୍ହତମାନେ ବାସ କରୁଥିଲେ * ।

ଭାରତର ପ୍ରାଚୀନ ଇତିହାସ ପାଠକଲେ ଜଣାଯାଏ ଯେ, ବୈଦିକଯୁଗରୁ ଭାରତୀୟ ଋଷି ଓ ସନ୍ନ୍ୟାସୀମାନେ ବୃକ୍ଷକୋଟର, ପର୍ବତ-ଗୁମ୍ଫା, ଶ୍ମଶାନ ପ୍ରଭୃତିରେ ବାସ କରି ତପସ୍ୟାଚରଣ କରୁଥିଲେ । ମନୁଷ୍ୟ-ଖୋଦିତ ଗୁମ୍ଫା ପୂର୍ବରୁ ପ୍ରାକୃତିକ ଗିରିଗହ୍ୱର ସନ୍ନ୍ୟାସୀମାନଙ୍କର ନିବାସଭୂମି ଥିଲା । ଅଳ୍ପ କେତେ ଦିନ ହେଲା ବୁଦ୍ଧଦେବଙ୍କ ତପସ୍ୟାସ୍ଥାନ ଗୃଧ୍ରକୂଟ-ଗୁହା ଆବିଷ୍କୃତ ହୋଇଅଛି। ଏହା ଗୋଟିଏ ପ୍ରାକୃତିକ ଗୁମ୍ଫା । ଏହା ନିକଟରେ ଆହୁରି ଅନେକ ପ୍ରାକୃତିକ ଗୁମ୍ଫା ଅଦ୍ୟାପି ଦେଖାଯାଏ ।

ଖାରବେଳଙ୍କ ପୂର୍ବରୁ ଖଣ୍ଡଗିରି ଉଦୟଗିରିରେ ହାତୀଗୁମ୍ଫା, ଗୁପ୍ତଗଙ୍ଗା ପ୍ରଭୃତି ଅନେକ ପ୍ରାକୃତିକ ଗୁମ୍ଫାର ଅବସ୍ଥିତି ଜଣାଯାଏ । ଆହୁରି ଅନେକ ପ୍ରାକୃତିକ ଗିରିଗହ୍ୱର କାଳକ୍ରମେ ଲୋକଚକ୍ଷୁର ଅନ୍ତରାଳରେ ରହିଅଛି । ତାଙ୍କ ପୂର୍ବରୁ କଳିଙ୍ଗର ଅର୍ହତ ବା ଜୈନ ସନ୍ନ୍ୟାସୀମାନେ ଗ୍ରୀଷ୍ମର ପ୍ରଚଣ୍ଡ ଉତ୍ତାପ, ବର୍ଷାର ପ୍ରବଳ ଧାରାପାତ, ଶୀତର ଭୀଷଣ ଜାଡ଼ୟରୁ ରକ୍ଷା ପାଇବାପାଇଁ ଏହି ପ୍ରାକୃତିକ ଗିରିଗହ୍ୱରମାନଙ୍କରେ ଜୀବନ ଯାପନ କରୁଥିଲେ ।

---

* ହାତୀଗୁମ୍ଫା ଲେଖ ୧୪ଶ ଧାଡ଼ି—"ସୁକତ ଶ୍ରମଣେଭ୍ୟ ସୁବିହିତେଭ୍ୟସ୍ତୁ ଶତସ୍ୟ ଦଶାଂ ଯତିଭ୍ୟଃ ତାପସ ଋଷିଭ୍ୟ ଲୟନଂ କାରୟତି ।" ଖାରବେଳଙ୍କ ସ୍ତ୍ରୀଙ୍କ ଲିପି—"କାଳିଙ୍ଗେଭ୍ୟଃ ଶ୍ରମଣେଭ୍ୟଃ ଲୟନଂ କାରିତଂ ।"

ଲେଖରୁ ସ୍ପଷ୍ଟ ଜଣାଯାଏ ଯେ, "ଅର୍ହତଃ ପରି-ନିବସତୋ ହି କାୟୁ-ନିଷୀଦ୍ୟାଃ", ଅର୍ଥାତ୍ ବାସ କରୁଥିବା ଅର୍ହତମାନଙ୍କ ପାଇଁ କାୟନିଷୀଦ୍ୟ ବା ଗୃହ ଯୋଗାଇବା ପାଇଁ ଖଣ୍ଡଗିରି ଓ ଉଦୟଗିରିରେ ସମ୍ରାଟ୍ ଖାରବେଳ ଅନେକ ଗୁମ୍ଫା ଖୋଳାଇ ଥିଲେ। ତାହାହେଲେ ତାଙ୍କ ପୂର୍ବରୁ ଏହା ଜୈନ ଅର୍ହତମାନଙ୍କର ଗୋଟିଏ ପ୍ରଧାନ ବାସଭୂମି ଥିବା ସୁନିଶ୍ଚିତ। ପୁଣି ସେହି ପ୍ରାଚୀନଯୁଗରେ ଗୋଟିଏ ପ୍ରସିଦ୍ଧ ଜୈନତୀର୍ଥ ଥିବାର ମଧ୍ୟ ସ୍ଥିର କରାଯାଇ ଅଛି। ଲେଖରେ ବର୍ଣ୍ଣିତ, "କଲିଙ୍ଗ-ପୁର୍ବରାଜ-ନିବେସିତଂ ପୃଥୁଦକଦର୍ଭ ନଗରେ କାତୟତି ଜାନ-ପଦଭବନଂ"* ବାକ୍ୟଟି ପୁରୀକୁ ଲକ୍ଷ୍ୟ କରି ଲେଖାଯାଇଛି।

'ପୃଥୁଦକ-ଦର୍ଭ' ଯେ ନଗରର ବିଶେଷଣ, ଏଥିରେ ଐତିହାସିକମାନଙ୍କ ମଧ୍ୟରେ ଆଉ ସନ୍ଦେହ ନାହିଁ। ଉକ୍ତ ବାକ୍ୟରୁ ଅନେକ ନୂତନ ଐତିହାସିକ ତଥ୍ୟ ପଣ୍ଡିତ ବିନାୟକ ମିଶ୍ର ଆବିଷ୍କାର କରିଛନ୍ତି। ଏହାର ସାରମର୍ମ ହେଉଛି—କୌଣସି ଗୋଟିଏ ପ୍ରସିଦ୍ଧ ସ୍ଥାନ ବହୁକାଳ ପରିତ୍ୟକ୍ତ ହୋଇ ଥିବାରୁ ସେଠାରେ ବହୁ ଜଳ ଜମା ହୋଇଥିଲା, ଅନେକ କୁଶ ଜନ୍ମିଥିଲା ଓ ନଗରଟି ପୋତି ହୋଇ ପଡ଼ିଥିଲା। ଖାରବେଳ ସେହି ନଗରକୁ ଖୋଳି ଜାନପଦ-ଭବନକୁ ଭୂଗର୍ଭରୁ କାଢ଼ିଥିଲେ (କାଢ଼ୟତି)। ଏହି ସ୍ଥାନଟି ପୁରୀ ବୋଲି ତହିଁର ପ୍ରଚଳିତ କିମ୍ବଦନ୍ତୀ ଆଲୋଚନା କଲେ ଜଣାଯାଏ।

---

* ସ୍ୱର୍ଗୀୟ ଭଗବାନ ଲାଲ ଇନ୍ଦ୍ରଜୀଙ୍କ ପାଠ। ଏହା ସମସ୍ତଙ୍କଦ୍ୱାରା ଗୃହୀତ ହୋଇଅଛି।

ପଦ୍ମପୁରାଣର ପାତାଳଖଣ୍ଡ ବର୍ଣ୍ଣନା ଅନୁସାରେ ଅରଣ୍ୟ ଭିତରେ ଲୁପ୍ତ ଥିବା ମନ୍ଦିରର ଶିଖର ଜଣେ ଶବର ବାଳକ ଦେଖି ଅନ୍ୟମାନଙ୍କୁ ଜଣାଇଥିଲା ଓ ଏହି ଦେଶର ରାଜା ଇନ୍ଦ୍ରଦ୍ୟୁମ୍ନ ତାକୁ ଖୋଳାଇଥିଲେ । ରାୟବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜ 'ଆମ ଘେଯେବାପାଙ୍କ କାହାଣୀ' ପୁସ୍ତକରେ ପୁରୀମନ୍ଦିର ସମ୍ବନ୍ଧରେ ଗୋଟିଏ କିମ୍ବଦନ୍ତୀ ପ୍ରକାଶ କରିଛନ୍ତି । ଏଥିରୁ ଜଣାଯାଏ, "ବହୁ ପ୍ରାଚୀନ କାଳରେ ପୁରୀରେ ଗୋଟିଏ ମନ୍ଦିର ଥିଲା । ତାହା ବହୁକାଳ ପରିତ୍ୟକ୍ତ ହେବାରୁ କାଳକ୍ରମେ ବାଲୁକାଚ୍ଛାଦିତ କୁଶଭୂମିରେ ପରିଣତ ହେଲା । ଦିନେ ଓଡ଼ିଶା ରାଜା ଘୋଡ଼ା ଚଢ଼ି ଯାଉଁ ଯାଉଁ ତାଙ୍କ ଘୋଡ଼ାର ଖୁରା ମନ୍ଦିରର ଅର୍ଦ୍ଧଲୁପ୍ତ କଳସ ଦେହରେ ବାଜିବାରୁ ରାଜା ତଳେ ପଡ଼ିଗଲେ । ରାଜା ପତନର କାରଣ ଅନୁସନ୍ଧାନ କରି ଜାଣିଲେ ଯେ, ଗୋଟିଏ ମନ୍ଦିର କଳସ ପର୍ଯ୍ୟନ୍ତ ଭୂମିରେ ପୋତି ହୋଇ ପଡ଼ିଛି । କିଛିଦିନ ପରେ ରାଜାଦେଶରେ ସମସ୍ତ ସ୍ଥାନ ଖୋଳାହେବାରୁ ଭୂମି ମଧ୍ୟରୁ ଗୋଟିଏ ସୁନ୍ଦର ମନ୍ଦିର ବାହାରିଲା ।" ଏ ପ୍ରବାଦ ପୁରୀ ଅଞ୍ଚଳରେ ସର୍ବଜନ ପ୍ରଚଳିତ । ଖାରବେଳଙ୍କ ଲେଖର ବୃତ୍ତାନ୍ତ ଏବଂ ଏହି କିମ୍ବଦନ୍ତୀର ବିବରଣ ମଧ୍ୟରେ ଆଶ୍ଚର୍ଯ୍ୟ ସାମଞ୍ଜସ୍ୟ ବିଦ୍ୟମାନ । ଉକ୍ତ ଲେଖରେ ଅନ୍ୟତ୍ର ଉଲ୍ଲେଖ ଅଛି ଯେ, କଳିଙ୍ଗରେ ଜଣେ ଜିନ ଥିଲେ । ତାଙ୍କର ଆସନ ଲୋକ ପ୍ରସିଦ୍ଧ ଥିଲା; ତାକୁ ନନ୍ଦରାଜା କଳିଙ୍ଗ ଜୟ କରି ନେଇ ଯାଇଥିଲେ । ଜିନପଦ ଓ ଜିନାସନର ଅର୍ଥ ଏକ । ଏହି ଜିନପଦ ଭବନରେ ଜିନାସନ ସୁରକ୍ଷିତ ହୋଇଥିଲା । ଖାରବେଳଙ୍କ ପୂର୍ବରୁ ନନ୍ଦରାଜା ଏହି ଜିନାସନ

ନେଇଯିବାରୁ ମନ୍ଦିରଟି ପରିତ୍ୟକ୍ତ ହୋଇ ବାଲିରେ ପୋତିହୋଇ ପଡ଼ିଥିଲା । ଖାରବେଲ ଉକ୍ତ ସ୍ଥାନର ମାହାତ୍ମ୍ୟ ବୁଝିପାରି ମନ୍ଦିରଟି ଭୂଗର୍ଭରୁ ଖୋଳାଇଥିଲେ । ଏହା ତାଙ୍କ ରାଜତ୍ୱର ଏକାଦଶ ବର୍ଷର ଘଟଣା । ଏ ସ୍ଥାନକୁ ଜୀନାସନ ଫେରାଇ ଆଣିବା ପାଇଁ ରାଜତ୍ୱର ଦ୍ୱାଦଶ ବର୍ଷରେ ସେ ଅଙ୍ଗ-ମଗଧର ରାଜା ବୃହସ୍ପତି ମିତ୍ରଙ୍କ ସହିତ ତୁମୂଳ ଯୁଦ୍ଧ କରି ଏ କାର୍ଯ୍ୟରେ କୃତକାର୍ଯ୍ୟ ହୋଇଥିଲେ ଓ ଜୀନାସନ ଜୀନପଦ ଭବନରେ ପୁନଃ ପ୍ରତିଷ୍ଠିତ ହୋଇଥିଲା । ତାହାହେଲେ ପୁରୀରେ ଗୋଟିଏ ଜୀନପଦ ଭବନ ବା ଜୈନ ମନ୍ଦିର ଥିଲା । ପଣ୍ଡିତ ବିନାୟକ ମିଶ୍ରଙ୍କ ମତରେ ଲେଖ ବର୍ଣ୍ଣିତ ଜୀନପଦ ଭବନ ପୁରୀରେ ଥିବା ପାର୍ଶ୍ୱନାଥଙ୍କ ମନ୍ଦିର ବ୍ୟତୀତ ଅନ୍ୟ କିଛି ନୁହେ ଓ ସେଥିରେ ପାର୍ଶ୍ୱନାଥଙ୍କ ମୂର୍ତ୍ତି ଥିଲା । ନନ୍ଦ ରାଜା ପୁରୀରୁ ପାର୍ଶ୍ୱନାଥଙ୍କ ମୂର୍ତ୍ତି ନେଇ ଯାଇଥିଲେ । ଖାରବେଲ ଏହି ମନ୍ଦିରର ଜୀର୍ଣ୍ଣସଂସ୍କାର କରି-ମଗଧରୁ ସେହି ମୂର୍ତ୍ତି ଆଣାଇ ପୁରୀରେ ପୁନର୍ବାର ରଖାଇ ଥିଲେ ।

ନନ୍ଦରାଜାଙ୍କ ଦ୍ୱାରା କଳିଙ୍ଗ ଜୀନାସନ ଅପହରଣ କଳିଙ୍ଗବାସୀ-ମାନଙ୍କ ପକ୍ଷରେ ଘୋର ଅପମାନର ବିଷୟ ହୋଇଥିଲା । ପ୍ରତ୍ୟେକ ଓଡ଼ିଆ ଜାଣେ, ସମଗ୍ର ଭାରତର ଆରାଧ୍ୟ ଦେବତା ପ୍ରଭୁ ନୀଳାଚଳ-ନାଥଙ୍କୁ ଯେତେବେଳେ ଦୁର୍ଦ୍ଧାନ୍ତ କଳାପାହାଡ଼ ନେଇଗଲା, ସେ ସମୟରେ ଓଡ଼ିଆମାନେ ଦୁଃଖ ଓ ଅପମାନର ହିମାଳୟ ମସ୍ତକରେ ବହନକରି ଅଧୀର ଓ ବିଚଳିତ ହୋଇ ପଡ଼ିଲେ । ଭୋଇ ବଂଶର ପ୍ରଥମ ରାଜା ରାମଚନ୍ଦ୍ର ଦେବଙ୍କ ଦ୍ୱାରା ଜଗନ୍ନାଥ ମହାପ୍ରଭୁ

ପୁନର୍ବାର ପୁରୀରେ ସୁରକ୍ଷିତ ହେବାରୁ ସମଗ୍ର ଉତ୍କଳରେ ଆନନ୍ଦର ଢେଉ ଖେଳି ଯାଇଥିଲା; ଲକ୍ଷ ଲକ୍ଷ ବୈଷ୍ଣବ ଆନନ୍ଦାଶ୍ରୁ ବିସର୍ଜନ କରିଥିଲେ। ପ୍ରାୟ ଦୁଇ ହଜାର ବର୍ଷ ତଳେ କଳିଙ୍ଗ ସମ୍ରାଟ୍ ଖାରବେଳ ଅଙ୍ଗ-ମଗଧରୁ କାଳିଙ୍ଗ ଜିନାସନ ମୂର୍ତ୍ତି ପୁନର୍ବାର ଫେରି ଆସିବାରୁ କଳିଙ୍ଗର ଅସଂଖ୍ୟ ଜୈନ ଆନନ୍ଦିତ ହୋଇଥିଲେ। ଏହି ଘଟଣାଟି ସାମାନ୍ୟ ହେଲେ ମଧ୍ୟ ଧର୍ମର ଇତିହାସରେ ଏହାର ମୂଲ୍ୟ କଳ୍ପନାତୀତ। କଳିଙ୍ଗର ଲକ୍ଷ ଲକ୍ଷ ଜୈନଙ୍କ ହୃଦୟରେ ଅପହୃତ ଜିନାସନର ସ୍ମୃତି ବଦ୍ଧମୂଳ ହୋଇଥିଲା। ସେମାନେ ନିଜର ହୃତ-ହୃଦୟ-ରତ୍ନ ଫେରି ପାଇ ଅତିଶୟ ଆନନ୍ଦ ଅନୁଭବ କରିଥିଲେ। ଏହା ଫଳରେ କଳିଙ୍ଗରେ ଜୈନଧର୍ମର ମାହାତ୍ମ୍ୟ ବୃଦ୍ଧି ପାଇଥିଲା ଓ ଏହାର ପ୍ରଚାର କାର୍ଯ୍ୟରେ ସହଜ ଓ ସୁଗମ ହୋଇଥିଲା।

ପୁରୀ ଗୋଟିଏ ପ୍ରାଚୀନ ଜୈନ ପୀଠ ଥିବାର ବର୍ତ୍ତମାନ ଅନ୍ୟ କେତେକ ପ୍ରାଚୀନ ଲେଖ ଏବଂ ସେ ଅଞ୍ଚଳରୁ ଆବିଷ୍କୃତ ଜୈନ ମୂର୍ତ୍ତିମାନଙ୍କ ଯୋଗୁଁ ଜଣାଗଲଣି। ଖାରବେଳଙ୍କ ପୂର୍ବରୁ ଉତ୍କଳର ଅନ୍ୟାନ୍ୟ ଜୈନ ତୀର୍ଥମାନଙ୍କର ଇତିହାସ ଅଦ୍ୟାପି ଜଣା ଯାଇନାହିଁ।

**ଖାରବେଳ ଓ ଉତ୍କଳରେ ଜୈନଧର୍ମ—** ଖାରବେଳଙ୍କ ସମୟରେ ଉତ୍କଳରେ ଜୈନଧର୍ମ ଉନ୍ନତିର ଚରମ ସୀମାରେ ଉପନୀତ ହୋଇଥିଲା। ତାଙ୍କ ରାଜତ୍ୱର ଇତିହାସ ଉତ୍କଳରେ ଜୈନଧର୍ମର ଶ୍ରୀବୃଦ୍ଧିର ଇତିହାସ। ବୁଦ୍ଧଙ୍କ ମୃତ୍ୟୁ ପରେ ଭାରତର ନାନା ଅଞ୍ଚଳରେ ଧନିକ ବୌଦ୍ଧମାନେ ବୌଦ୍ଧ ଯତିମାନଙ୍କର

ଧର୍ମ ଓ ଜ୍ଞାନଚର୍ଚ୍ଚା ନିମିତ୍ତ ପ୍ରାସାଦ, ବିହାର, ଗୁମ୍ଫା, ମଠ ଇତ୍ୟାଦି ନିର୍ମାଣ କରିଥିଲେ । ଅଶୋକ ଓ ତାଙ୍କ ନାତି ଦଶରଥ ଜୈନ ଆଜୀବକମାନଙ୍କର ନିବାସ ନିମିତ୍ତ ଯଥାକ୍ରମେ ବିହାର ପ୍ରଦେଶସ୍ଥ ଗୋରଖଗିରି ଓ ନାଗାର୍ଜୁନ ଗିରିରେ କେତେକ ଗୁମ୍ଫା ଖୋଲାଇ-ଥିଲେ । ଖାରବେଳ ପୂର୍ବତନ ରାଜାମାନଙ୍କର ଆଦର୍ଶ ଅନୁସରଣ କରି ସ୍ୱ ଧର୍ମର ଶ୍ରୀବୃଦ୍ଧି ନିମିତ୍ତ ଉଦୟଗିରି ଓ ଖଣ୍ଡଗିରିରେ ନିଜେ, ନିଜର ପୁତ୍ର, ଭାର୍ଯ୍ୟା, ଭୃତ୍ୟ ଓ ଅମାତ୍ୟମାନଙ୍କଦ୍ୱାରା ୧୧୭ଟି ଗୁମ୍ଫା ଖୋଲାଇ ଥିଲେ * । ଏ ଗୁଡ଼ିକ କଳିଙ୍ଗବାସୀ ଅର୍ହତମାନଙ୍କର ନିବାସ ନିମିତ୍ତ ଖୋଦିତ ହୋଇଥିଲା । ଖାରବେଳଙ୍କ ପୂର୍ବରୁ ବିମ୍ବିସାର, ଅଜାତଶତ୍ରୁ, ଦଶରଥ, ସାମ୍ପ୍ରତି ପ୍ରଭୃତି ମଗଧ ନରପତିମାନେ ଜୈନ ଧର୍ମର ଉନ୍ନତି କଳ୍ପେ ଚେଷ୍ଟା କରିଥିଲେ ସତ୍ୟ; କିନ୍ତୁ ସେମାନେ ଦିଗ୍‌ବିଜୟୀ ଭାରତ-ସମ୍ରାଟ ଖାରବେଳଙ୍କ ପରି ଜୈନ ଧର୍ମର ପ୍ରଚାର ଓ ଶ୍ରୀବୃଦ୍ଧି ନିମିତ୍ତ ନିଜର ସମୟ, ଶକ୍ତି ଓ ଧନ ନିୟୋଜିତ କରି ନ ଥିଲେ । ଦେବପ୍ରିୟ ପ୍ରିୟଦର୍ଶୀ ଅଶୋକ ଓ କୁଶାଣ ସମ୍ରାଟ୍ କନିଷ୍କ ଅକ୍ଳାନ୍ତ ପରିଶ୍ରମ ଫଳରେ ବୌଦ୍ଧଧର୍ମର ଇତିହାସରେ ଯେପରି ଯୁଗାନ୍ତର ଆନୟନ କରିଥିଲେ, କଳିଙ୍ଗ ସମ୍ରାଟ୍ ଖାରବେଳ ସେହିପରି ନିଜର ସମସ୍ତ ଶକ୍ତି ପ୍ରୟୋଗ କରି ଭାରତର କେତେକାଞ୍ଚଳରେ ସୀମାବଦ୍ଧ ଜୈନ ଧର୍ମର ଇତିହାସରେ ଗୋଟିଏ ନୂତନ ଯୁଗର ସୃଷ୍ଟି କରିଥିଲେ ।

* "ତ୍ରୟୋଦଶେ-ବର୍ଷେ ସୁପ୍ରବର୍ତ୍ତି-ବିଜୟ-ଚକ୍ରେ କୁମାରୀ ପର୍ବତେ ଅର୍ହତଃ ପରିନିବସତୋ ହି କାୟ-ନିଷୀଦ୍ୟାଂ ରାଜଭୃତୈଃ ରାଜଭ୍ରାତୃଭିଃ ରାଜପୁତ୍ରୈଃ ରାଜମହିଷୀଭିଃ ଖାରବେଳେନ ଶ୍ରୀମତା ସପ୍ତଦଶ-ଲୟନ-ଶତଂ କାରିତଂ ।"

ଭାରତରେ ଧର୍ମ ପ୍ରଚାରର ଇତିହାସ ସହିତ ଶିଳ୍ପ ଓ ସ୍ଥାପତ୍ୟର ଉନ୍ନତି ଘନିଷ୍ଠ ଭାବରେ ସଂପୃକ୍ତ । ବୌଦ୍ଧଧର୍ମ ଭାରତରେ ପ୍ରବଳ ହୋଇଥିବା ସମୟରେ ଭାରତବର୍ଷ ଅସଂଖ୍ୟ ବୌଦ୍ଧ ବିହାର, ଚୈତ୍ୟ, ଗୁମ୍ଫା ସ୍ତମ୍ଭାଦିଦ୍ୱାରା ସୁଶୋଭିତ ହୋଇଥିଲା ।

ଅଶୋକଙ୍କ ସମୟରେ କଳିଙ୍ଗ-ରାଜଧାନୀ ତୋଷଲି ନଗରୀରେ (ଧଉଳିଗଡ଼) ଅନେକ ବୌଦ୍ଧଗୁମ୍ଫା ଓ କୀର୍ତ୍ତି ନିର୍ମିତ ହୋଇଥିଲା । ଖାରବେଳ ସ୍ୱଧର୍ମର ବୈଜୟନ୍ତୀ ଉଡ଼ାଇବା ନିମିତ୍ତ ଉଦୟଗିରି ଓ ଖଣ୍ଡଗିରିରେ ପରିବାରବର୍ଗସହ ୧୧୭ ଗୁମ୍ଫା ଓ ଅନେକ ଜୈନକୀର୍ତ୍ତି ପ୍ରତିଷ୍ଠା କରିଥିଲେ । ଭାରତର ଅନ୍ୟ କୌଣସି ପ୍ରଦେଶରେ ଦୁଇହଜାର ବର୍ଷ ପୂର୍ବର ଏପରି ବିଶାଳ ସୁନ୍ଦର ଜୈନକୀର୍ତ୍ତିମାନ ଆଜିପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ । ମଗଧ ପ୍ରଦେଶସ୍ଥ ଗୋରଖଗିରି ଓ ନାଗାର୍ଜ୍ଜୁନ ପର୍ବତର ଜୈନକୀର୍ତ୍ତି ସକଳ ପ୍ରଶଂସନୀୟ ହେଲେ ମଧ୍ୟ ଉଦୟଗିରି ଓ ଖଣ୍ଡଗିରିର ଜୈନ-କୀର୍ତ୍ତିମାନଙ୍କ ସହିତ ଆଦୌ ତୁଳନୀୟ ନୁହେ । ଏଗୁଡ଼ିକ ଭାରତର ଶ୍ରେଷ୍ଠ, ସୁନ୍ଦରତମ ଓ ପ୍ରାଚୀନତମ ଜୈନକୀର୍ତ୍ତି । ଏତଦ୍‌ବ୍ୟତୀତ ସେ ନିଜର ପୂର୍ବପୁରୁଷମାନଙ୍କର * କୀର୍ତ୍ତିଗୁଡ଼ିକର ସଂସ୍କାର କରିଥିଲେ ।

ତାଙ୍କ ପୂର୍ବରୁ ତାଙ୍କ ବଂଶୀୟ ରାଜାମାନେ ଅନେକ କୀର୍ତ୍ତି ସ୍ଥାପନ କରିଥିଲେ । ସେ ଚେତିବଂଶର ଶ୍ରେଷ୍ଠ ନୃପତି ହୋଇଥିବାରୁ ପୂର୍ବ ରାଜାମାନଙ୍କର କୀର୍ତ୍ତିଗୁଡ଼ିକ ସଂସ୍କାର କରିଥିଲେ । ଭାରତର

* "ଦଶମେଚ ବର୍ଷେ × × × କଳିଙ୍ଗ ପୂର୍ବ ରାଜାନାଂ ଯଶଃ ସଂସ୍କାରଂ କାରୟତି ଶତସହସ୍ରୈଃ" ।

ଇତିହାସ ପାଠ କଲେ ଜଣାଯାଏ ଯେ, ରାଜା ଓ ସମ୍ରାଟମାନଙ୍କର ପୃଷ୍ଠପୋଷକତା ଲାଭ କରି ଭାରତରେ ବିଭିନ୍ନ ପ୍ରକାର ଧର୍ମମତ ଓ ଶିଳ୍ପ ପ୍ରତିଷ୍ଠା ଲାଭ କରିଥିଲା । ମୌର୍ଯ୍ୟଗୌରବ ପ୍ରିୟଦର୍ଶୀ ଅଶୋକଙ୍କ ପ୍ରବଳ ଅଧ୍ୟବସାୟ ଓ ଏକାନ୍ତ ନିଷ୍ଠାଯୋଗୁ ବୌଦ୍ଧ-ଧର୍ମ ଭାରତର ପ୍ରଧାନ ଧର୍ମ ହୋଇ ପାରିଥିଲା । କିନ୍ତୁ ତାଙ୍କର ସମଗ୍ର ପରିବାର ଓ ରାଜକର୍ମଚାରୀମାନେ ବୌଦ୍ଧଧର୍ମାବଲମ୍ବୀ ଥିବାର କୌଣସି ପ୍ରମାଣ ନାହିଁ । ପରନ୍ତୁ ଲେଖ ଓ କିମ୍ବଦନ୍ତୀରୁ ଜଣାଯାଏ, ସେମାନଙ୍କ ମଧ୍ୟରେ କେତେକ ଅନ୍ୟ ଧର୍ମାବଲମ୍ବୀ ଥିଲେ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ଖାରବେଳଙ୍କ ପରିବାରବର୍ଗ ଓ କର୍ମଚାରୀ ସକଳ ଜୈନଧର୍ମର ଭକ୍ତ ଥିଲେ । ତାଙ୍କର ସ୍ତ୍ରୀ, ପୁତ୍ର ଓ ଭୃତ୍ୟମାନେ ସ୍ୱତନ୍ତ୍ର ସ୍ୱତନ୍ତ୍ର ଗୁମ୍ଫା ଖୋଳିଥିଲେ । ବୈକୁଣ୍ଠପୁର ଗୁମ୍ଫାଟି କଳିଙ୍ଗର ଶ୍ରମଣମାନଙ୍କ ନିମିତ୍ତ ଖାରବେଳଙ୍କ ପାଟରାଣୀ * ଖୋଳାଇ ଥିଲେ ।

ମଞ୍ଚପୁରୀ ଗୁମ୍ଫା ଖାରବେଳଙ୍କ ପୁତ୍ର ଶ୍ରୀକୁଡ଼େପଶ୍ରୀ † ଖୋଳାଇ-ଥିଲେ । ଖାରବେଳଙ୍କ ଦ୍ୱିତୀୟ ପୁତ୍ର କୁମାର ବଡୁଖ ଯମପୁରୀ-ଗୁମ୍ଫା ଖୋଳାଇଥିଲେ । ସର୍ପଗୁମ୍ଫା ଓ ହରିଦାସ ଗୁମ୍ଫା ବା ପାବନଗୁମ୍ଫାକୁ ଖାରବେଳଙ୍କ କର୍ମଚାରୀ ଚୁଲକମ ଖୋଳାଇଥିଲେ । ବ୍ୟାଘ୍ରଗୁମ୍ଫା ନଗର ବ୍ୟବହାରିକ ଭୂତିଙ୍କ ଦ୍ୱାରା ଖୋଦିତ ହୋଇଥିଲା । ଜମ୍ବେଶ୍ୱର ଗୁମ୍ଫା ମହାମଦ ନାକିୟ ଖୋଳାଇଥିଲେ । ଖାରବେଳଙ୍କ

---

* "କାଳିଙ୍ଗେଭ୍ୟଃ ଶ୍ରମଣେଭ୍ୟଃ ଲେଣଂ କାରିତଂ × × × କଳିଙ୍ଗ ଚକ୍ରବର୍ତ୍ତିନଂ ଶ୍ରୀ ଖାରବେଳସ୍ୟ ଅଗ୍ରମହିଷ୍ୟା" ।

† "ମହାରାଜସ୍ୟ କଳିଙ୍ଗାଧିପତେ ର୍ମହାମେଘ ବାହନସ୍ୟ ଶ୍ରୀ କଦମ୍ପସ ( କୁଡ଼େପ ବା ପାଠ ) ।"

ପାଦମୂଲକ ବା ପାଦସେବୀ ଖଣ୍ଡଗିରିରେ ଡଜ୍ଜୁଗୁମ୍ଫା ପ୍ରଭୃତି ଅନେକ ଗୁମ୍ଫା ଖୋଳାଇଥିଲେ ( ପାଦମୂଲକସ୍ୟ କୁସୁମସ୍ୟ ଲୟନାନି ) । ଭାରତରେ ସ୍ୱଧର୍ମନିଷ୍ଠାର ଏପରି ଦୃଷ୍ଟାନ୍ତ ଅତି ବିରଳ । ଏମାନଙ୍କର ଅତୁଚ୍ଚ ଅନେକ କୀର୍ତ୍ତି କାଳକ୍ରମେ ନଷ୍ଟ ଓ ଧ୍ୱଂସ ହୋଇ ଯାଇଅଛି । ତଥାପି ସେମାନେ ଜୈନ ଧର୍ମର ଉନ୍ନତି ନିମିତ୍ତ ପ୍ରଗାଢ଼ ନିଷ୍ଠା ସହିତ ଯାହା କରି ଯାଇଛନ୍ତି ତାହା ଚିରସ୍ମରଣୀୟ ।

ସ୍ୱର୍ଗୀୟ ଜୟସ୍ୱାଲ ଓ ସ୍ୱର୍ଗୀୟ ବାନର୍ଜୀ ମହାଶୟ ଖାରବେଳଙ୍କ ଜୈନଧର୍ମ ପ୍ରଚାର ସମ୍ବନ୍ଧରେ କେତେକ ନୂତନ ତଥ୍ୟ ପ୍ରକାଶ କରିଥିଲେ । ସେଥିରୁ ଜଣାଯାଏ ଯେ, ସେ ରାଜତ୍ୱର ତ୍ରୟୋଦଶ ବର୍ଷରେ ଜୈନ ଅର୍ହତମାନଙ୍କର ଗୋଟିଏ ସଭା କରାଇଥିଲେ । ଏଥିରେ ଭାରତର ଅନେକ ଅଞ୍ଚଳରୁ ଜୈନମାନେ ଯୋଗ ଦେଇଥିଲେ । ଉଦୟଗିରିରେ ବହୁକାଳ ପୂର୍ବରୁ ଗୋଟିଏ ଜୈନ ବସ୍ତୁ-ବିଗ୍ରହ (Relic memorial) ବିଦ୍ୟମାନ ଥିଲା * । ସେଠାରେ ଜୈନମାନେ ଧର୍ମାଚର୍ଚ୍ଚନ କରୁଥିଲେ । ସେ ଜୈନମାନଙ୍କ ମଧ୍ୟରେ ଶ୍ୱେତ-ବସ୍ତ୍ର ବଣ୍ଟନ କରିଥିଲେ । ସର୍ବଶେଷରେ ଜୈନମାନଙ୍କର ଧର୍ମଗ୍ରନ୍ଥ ସପ୍ତାଙ୍ଗର ପୁନର୍ମୁଦ୍ରଣ କରାଇଥିଲେ । ଜୈନ ପ୍ରବାଦ ଓ ଗ୍ରନ୍ଥମାନଙ୍କରୁ ଜଣାଯାଏ ଯେ, ମୌର୍ଯ୍ୟ ରାଜତ୍ୱରେ ସପ୍ତାଙ୍ଗ ଲୁପ୍ତ ହୋଇ ଯାଇଥିଲା । ସେ ଏହାର ପୁନରୁଦ୍ଧାର କରି ଜୈନମାନଙ୍କର ଗୋଟିଏ ପ୍ରଧାନ ଅଭାବ ଦୂର କରିଥିଲେ । ଗ୍ରନ୍ଥ ସଂସ୍କାର ବିଷୟରେ ବୌଦ୍ଧ କୁଶାନରାଜ କନିଷ୍କଙ୍କ ପରି ଜୈନଧର୍ମର ଇତିହାସରେ ସେ ଅମର ଯଶଃ ଲାଭ କରିଛନ୍ତି ।

* Epi India Vol. II P—24, I. A. Vol, XIII P—22

କେବଳ ଏତିକରେ ତାଙ୍କର ଜୈନଧର୍ମ ନିଷ୍ଠା ଶେଷ ହୋଇ ନ ଥିଲା । ସେ ଏହି ୧୧୭ ଗୁମ୍ଫା ବ୍ୟତୀତ ଅନ୍ୟର ଅନେକ କୀର୍ତ୍ତି ନିର୍ମାଣ କରିଥିଲେ ।

ହାତୀଗୁମ୍ଫା ଲେଖର ୧୬ଶ ଧାଡ଼ିରେ ପ୍ରଦତ୍ତ ବିବରଣରୁ ଜଣାଯାଏ ଯେ * ଖାରବେଳ ରାଜତ୍ୱର ଚତୁର୍ଦ୍ଦଶ ବର୍ଷରେ 'ଅର୍ହତ-ନିସୀଦୀୟ' ସମୀପରେ ଶତ ଦିଗାଗତ ଯତି, ମୁନି, ଋଷି ( ଏମାନେ ହିନ୍ଦୁ ତପସ୍ୱୀ ) ଓ ପ୍ରଖ୍ୟାତନାମା ଜୈନ ଶ୍ରମଣମାନଙ୍କ ନିବାସ ନିମିତ୍ତ ଗୋଟିଏ ବଡ଼ ଗୁମ୍ଫା ଖୋଳାଇଥିଲେ । ଅର୍ହତ ନିସୀଦୀୟକୁ ଜୟସ୍ୱାଲ୍ (Memorial tomb) ସମାଧି-ସ୍ତୂପ ବୋଲି ଅର୍ଥ କରିଛନ୍ତି । ଖଣ୍ଡଗିରିରୁ ଅବିଷ୍କୃତ ଭଗ୍ନପୂର୍ଣ୍ଣ କେତେକ ସମାଧି ସ୍ଥାନ ତାଙ୍କର ଏ ଅର୍ଥର ପୋଷକତା କରେ । ବରୁଆ ମହାଶୟ ଏହାକୁ ନିବାସ ସ୍ଥାନ ବୋଲି ସ୍ଥିର କରିଛନ୍ତି । କିନ୍ତୁ ପ୍ରଥମ ଅର୍ଥ ବିଶେଷ ଭାବେ ପ୍ରଯୁଜ୍ୟ । ସମ୍ଭବତଃ ସେ କୌଣସି ପ୍ରସିଦ୍ଧ ଅର୍ହତଙ୍କର ସମାଧି ସ୍ତୂପ ନିକଟରେ ଏହି ବିଶାଳ ଗୁମ୍ଫାଟି ଖୋଦନ କରିଥିଲେ । ଏହା ନିକଟରେ ପର୍ବତର ପଭାର † ବା କ୍ରମନିମ୍ନ

---

* "ସୁକତ—ସମଣ-ସୁବିହିତାନାଂ ଶତ ଦିଶାନାଂ ଯତିନଂ ତାପସଂ ଇସିନଂ ସଂଘିୟନଂ କାରୟତି । ଅରହତ ନିସୀଦୟ ସମୀପେ ପଭାରେ ବରାକର ସମୁଥାପିତାହି ଅନେକ ଯୋଜନା ହିତାହି ପନତିସାହି ସତ ସହସାହି ଶିଳାହି ସିଳ ଥଂଭାନ, ଚ ଚେତିୟାନି ଚ କାରାପୟତି । ପଟଳକ ଚତରେ ବଟେରିୟ-ଗଭେ ଥଂଭେ ପତିଠାପୟତି ପନତରିୟ ସତ ସହସେହି । ଚତ ମୁରିୟ-କାଲ-ବୋଛିନଂ ଚେତୟତ ଅଥସତିକଂ ତୁରିୟଂ ( ଉପାଦୟତି )" ( ମୂଳ ହାତୀଗୁମ୍ଫା ଲେଖ—୧୬ଶ ଧାଡ଼ି )।

† ଯଥା ପଭାରଂ ଖୋଧାଟପତିଟ୍ଠେଣଂ କଟଂ କାରେମା (ପାଲି) ।

ଭୂମିରେ ବହୁ ଯୋଜନ ଦୂରବର୍ତ୍ତୀ (ବଗ୍‌କର) ଶ୍ରେଷ୍ଠ ଖଣି-ମାନଙ୍କରୁ ଆନୀତ ହୋଇଥିବା ୩୫ ଲକ୍ଷ ପଥର ଦ୍ୱାରା ଅନେକ ଶିଳାସ୍ତମ୍ଭ ଓ ଚୈତ୍ୟ ନିର୍ମାଣ କରିଥିଲେ *।

ପଟ୍ଟଳିକ ଚତ୍ୱର ନାନାବିଧ ଶିଳ୍ପ ଶୋଭିତ ଅଗଣାରେ ଗୋଟିଏ ବହୁସ୍ତମ୍ଭ ଶୋଭିତ ବୈଦୁର୍ଯ୍ୟ-ଗୃହ ୭୫ ଲକ୍ଷ ମୁଦ୍ରା ବ୍ୟୟ କରି ନିର୍ମାଣ କରିଥିଲେ । ବୈଦୁର୍ଯ୍ୟ ନୀଳଖଚିତ ୫୦ଟି ଚୈତ୍ୟ-ଯଷ୍ଟି (ସ୍ତମ୍ଭ) ତାହାର ଗୃହପାଖେ ବସାଇଥିଲେ ।

ଖାରବେଳଙ୍କ ରାଜତ୍ୱର ଶେଷ ବର୍ଷରେ ଖୋଦିତ ଏହି ବିରାଟ ଗୁମ୍ଫାଟି ଉଦୟଗିରିର ବହୁକାର୍ଯ୍ୟ-ଖଚିତ ପର୍ବତର କମନୀୟ (ପଭାର) ଭୂମିରେ ଖୋଦିତ ବୌଦ୍ଧବିହାର ସଦୃଶ ପ୍ରତୀୟମାନ ହେଉଥିବା ରାଣୀହଂସପୁର ନାମକ ଦ୍ୱିତଳ ପ୍ରାସାଦ ସହିତ ଶୋଭିତ ହୋଇଅଛି । ଲେଖ ବର୍ଣ୍ଣିତ ପଟ୍ଟଳିକ ଚତ୍ୱର ରାଣୀହଂସପୁରର ସମ୍ମୁଖରେ ଥିବା ବୃହତ ଅଗଣା ହେବା ସମ୍ଭବପର ।

ସ୍ତମ୍ଭାବଳୀ-ଶୋଭିତ, ଚନ୍ଦ୍ରାତପ-ଖଚିତ, ବୈଦୁର୍ଯ୍ୟ ଗୃହଟି ଏହି ଅଗଣାରେ ନିର୍ମିତ ହୋଇଥିବାର ମନେହୁଏ । ଏହି ଉଭୟ ପର୍ବତର ଅନ୍ୟ କୌଣସିଠାରେ ଏପରି ବଡ଼ ଚଉତରା ଦେଖାଯାଏ ନାହିଁ । ଏଠାରେ ଚୈତ୍ୟର ଅବସ୍ଥିତି ଆଜି ପର୍ଯ୍ୟନ୍ତ ଜଣାଯାଇ ନାହିଁ । ତେବେ ଖଣ୍ଡଗିରିର ଦେବ ସଭାରେ ଛୋଟ ଛୋଟ ମନ୍ଦିର ଗୁଡ଼ିଏ ଦେଖି ମନେହୁଏ, ଏକ ସମୟରେ ଏ ଦୁଇ ପାହାଡ଼ରେ ଅନେକଗୁଡ଼ିଏ ଚୈତ୍ୟ ଥିଲା । ସେଗୁଡ଼ିକ

---

* ଶିଳାଅଂଭିକ ତେତିଯ୍ୟାନ ବହୁବଚହାନ୍ତ ।

କାଳକ୍ରମେ ନଷ୍ଟ ହୋଇ ଯିବାରୁ ସେହି ସ୍ମୃତିକୁ ଚିରସ୍ଥାୟୀ କରିବା ନିମିତ୍ତ ପରବର୍ତ୍ତୀ କାଳରେ ଏପରି କ୍ଷୁଦ୍ର କ୍ଷୁଦ୍ର ମନ୍ଦିରର ପ୍ରତିମୂର୍ତ୍ତି ଏକତ୍ରିତ କରା ହୋଇଅଛି । ସ୍ତମ୍ଭାଳୟ, ଶିଳାସ୍ତମ୍ଭ ଓ ଚୈତ୍ୟଗୁଡ଼ିକ ଏକତ୍ର ଥିଲା ବା ଅଲଗା ଥିଲା, ତାହା କହିବା ସହଜ ନୁହେ । କିନ୍ତୁ ଚୈତ୍ୟର ଚତୁର୍ଦ୍ଦିଗରେ ସ୍ତମ୍ଭମାନ ନିର୍ମିତ ହୋଇଥିବା ସମ୍ଭବପର । କାରଣ କୃଷ୍ଣାନଦୀ ତୀରବର୍ତ୍ତୀ ନାଗାର୍ଜ୍ଜୁନ କୋଣ୍ଡା ନାମକ ଗୋଟିଏ ସ୍ଥାନରୁ ଖ୍ରୀଷ୍ଟୀୟ ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀର କେତେକ ବୌଦ୍ଧକୀର୍ତ୍ତି ଖୋଳା ହେବା ଦ୍ୱାରା ଦେଖାଯାଇଛି ଯେ, ସେଠାରେ ପ୍ରତି ଚୈତ୍ୟର ଚାରି କୋଣରେ ( ଅଗ୍ନି, ବାୟୁ, ଐଶାନ୍ୟ, ନୈର୍‌ଋତ ) ବୁଦ୍ଧଙ୍କ ଜୀବନର ପାଞ୍ଚଟି ପ୍ରଧାନ ଘଟଣାର ସ୍ମାରକ ସ୍ୱରୂପ ୫ଟି ସାୟକ ସ୍ତମ୍ଭ ପ୍ରୋଥିତ ହୋଇଥିଲା; ଅର୍ଥାତ୍ ପ୍ରତି ଚୈତ୍ୟ ନିକଟରେ ୨୦ଟି ସ୍ତମ୍ଭ ଥିଲା । ବୋଧହୁଏ ଖାରବେଳ ଉଦୟଗିରି ନିକଟରେ ଏପରି ସ୍ତମ୍ଭାବୃତ୍ତ ଜୈନ ଚୈତ୍ୟମାନ ନିର୍ମାଣ କରିଥିଲେ । ଏଠାରେ ଖୋଦନକାର୍ଯ୍ୟ ନ ହେବା ପର୍ଯ୍ୟନ୍ତ ଏ ବିଷୟରେ ଶେଷ ସିଦ୍ଧାନ୍ତ କରିବା ସମ୍ଭବ ନୁହେ । ଦୁଃଖର ବିଷୟ ବହୁଲକ୍ଷ ମୁଦ୍ରାବ୍ୟୟରେ ଖାରବେଳଙ୍କ ରାଜତ୍ୱର ଶେଷରେ ନିର୍ମିତ ହୋଇଥିବା ଏହି ବିରାଟ ଜୈନକୀର୍ତ୍ତିମାନଙ୍କର କୌଣସି ସନ୍ଧାନ ମିଳି ନାହିଁ ।

ଏତଦ୍‌ବ୍ୟତୀତ ସେ ସ୍ୱ ଧର୍ମକୁ ଲୋକପ୍ରିୟ କରିବା ପାଇଁ ମଧ୍ୟେ ମଧ୍ୟେ ବ୍ରାହ୍ମଣ ଓ ଶ୍ରବଣମାନଙ୍କୁ (ଜୈନ) ପାନ ଭୋଜନ ଇତ୍ୟାଦି ଦେଉଥିଲେ ଏବଂ ନାନାବିଧ ସମାଜ ଓ ଉତ୍ସବ ଅନୁଷ୍ଠାନ

କରିଥିଲେ * । ବୌଦ୍ଧମାନେ ବୋଧିଦ୍ରୁମକୁ ପୂଜା କଲାପରି ଜୈନମାନେ କଳ୍ପବୃକ୍ଷକୁ ସମ୍ମାନ ଓ ଭକ୍ତି କରୁଥିଲେ । କଳ୍ପବୃକ୍ଷର ପୂଜା ସେମାନଙ୍କ ଧର୍ମର ପ୍ରଧାନ ଅଙ୍ଗ । ଖାରବେଳ ରାଜତ୍ୱର ଅଷ୍ଟମ ବର୍ଷରେ ମଥୁରାରୁ ହସ୍ତୀ, ଗଜ, ନର, ରଥ ବେଷ୍ଟିତ ପଲ୍ଲବଭାର କଳ୍ପବୃକ୍ଷକୁ ଗୋଟିଏ ବିରାଟ ଶୋଭାଯାତ୍ରାରେ କଳିଙ୍ଗକୁ ନେଇ ଆସିଲେ । ହିନ୍ଦୁମାନଙ୍କର ଯାତ୍ରା ଉତ୍ସବ ପରି ଜୈନମାନେ ମଙ୍ଗଳକୃତ୍ୟମାନ କରନ୍ତି । ଏଗୁଡ଼ିକ ନାନାପ୍ରକାର । ସେ ରାଜତ୍ୱର ସପ୍ତମ ବର୍ଷରେ ଅସିଛନ, ଧ୍ୱଜରଥ, ହସ୍ତୀ, ତୁରଙ୍ଗ, ଘଣ୍ଟମାନ ସବଂସ ସଜ୍ଜିତ କରାଇ ବହୁମୁଦ୍ରା ବ୍ୟୟ କରି ଅନେକ ଜୈନ ମଙ୍ଗଳକୃତ୍ୟ କରିଥିଲେ । ଏ ସମସ୍ତ କାର୍ଯ୍ୟଦ୍ୱାରା ସେ ନିଜ ଧର୍ମକୁ ସରସ ଓ ଲୋକପ୍ରିୟ କରିଥିଲେ । ସେ ରକ୍ଷଣଶୀଳ ଜୈନ ନ ଥିଲେ । ତେଣୁ ସେ ସମୟରେ ଉତ୍କଳର ଅନେକ ଲୋକ ଜୈନଧର୍ମ ପ୍ରତି ଆକୃଷ୍ଟ ହୋଇ ଏହି ଧର୍ମ ଗ୍ରହଣ କରିଥିବେ ।

ଖାରବେଳଙ୍କ ପରେ ଚେତବଂଶରେ ଆଉ ତିନିଜଣ ରାଜା ରାଜତ୍ୱ କରିଥିଲେ । ପୁରାଣମାନଙ୍କରୁ ଜଣାଯାଏ, ମହା ମେଘବାହନ ବଂଶର ନଅଜଣ ରାଜା ଉତ୍କଳରେ ରାଜତ୍ୱ କରିଥିଲେ । ତାଙ୍କ ପୁତ୍ର କୁଦେବଶ୍ରୀ ବା କଦର୍ପଶ୍ରୀ ଜୈନ ଥିବା ଜଣାଯାଏ । ତାଙ୍କ ପରବର୍ତ୍ତୀ ଦୁଇଜଣ ରାଜା କେଉଁ ଧର୍ମର ପୃଷ୍ଠପୋଷକ ଥିଲେ ତାହା ଜଣାଯାଇ ନାହିଁ ।

---

* ଅଷ୍ଟମେଚ ବର୍ଷେ......କଳିଙ୍ଗ ଜାତି ସର୍ବଗୃହବାସୀଭ୍ୟଶ୍ଚ ସର୍ବରାଜ ଭୃତ୍ୟ କେଭ୍ୟଶ୍ଚ ସର୍ବଗଣପତିଭ୍ୟଶ୍ଚ ସର୍ବ ବ୍ରାହ୍ମଣେଭ୍ୟଶ୍ଚ ପାନ ଭୋଜନଂ ଦଦାତି ଅର୍ହତେଭ୍ୟଃ ଶ୍ରମଣେଭ୍ୟଃ ଦଦାତି ଶତ ସହସ୍ରୈଃ ।

## ଜୈନଧର୍ମ ଓ ଉତ୍କଳୀୟ ଶିଳ୍ପର ବିକାଶ—

ପ୍ରାଗୈତିହାସିକ ଯୁଗରୁ ଧର୍ମସହିତ ଭାରତୀୟ ଶିଳ୍ପସ୍ଥାପତ୍ୟ ଓ ଭାଷାର ନିଗୂଢ଼ ସମ୍ପର୍କ ବିଦ୍ୟମାନ । ଭାରତ ସରକାରଙ୍କ ଦ୍ୱାରା ଖୋଦିତ ସିନ୍ଧୁନଦୀତୀରବର୍ତ୍ତୀ ହରପ୍ପା ଓ ମହେଞ୍ଜୋଦାରୋ ନାମକ ଷଷ୍ଠ ସହସ୍ର ବର୍ଷର ପ୍ରାଚୀନ ନଗରଦ୍ୱୟରୁ ମିଳିଥିବା ଅସଂଖ୍ୟ ମୂର୍ତ୍ତି, ମୁଦ୍ରା, ସିଲ୍ ଓ ଲେଖ ପ୍ରଭୃତିରୁ ଭାରତର ତତ୍କାଳୀନ ଧର୍ମ, ସମାଜ, ଶିଳ୍ପ ଓ ଭାଷା ସମ୍ବନ୍ଧରେ ଅନେକ ନୂତନ ତଥ୍ୟ ଜଣାଯାଏ । ସାରନାଥ, ସାଞ୍ଚୀ, ବରହୁତ, ପାଟଳିପୁତ୍ର, ରାଜଗୃହ, ବୁଦ୍ଧଗୟା, ତକ୍ଷଶୀଳା, ମଥୁରା ଇତ୍ୟାଦି ସ୍ଥାନରେ ଥିବା ବୌଦ୍ଧସ୍ତୁପ, ଚୈତ୍ୟ, ବିହାର ସ୍ତମ୍ଭଗୁଡ଼ିକର ବିଶ୍ୱବନ୍ଦନୀୟ ଶିଳ୍ପକଳାରେ ବୌଦ୍ଧଧର୍ମର ମାହାତ୍ମ୍ୟ ପ୍ରକଟିତ ହୋଇଅଛି । ହିନ୍ଦୁଧର୍ମର ପୁନରୁତ୍ଥାନ ଯୁଗର ଇତିହାସ ଆକୁମାରୀହିମାଳୟ ବିସ୍ତୃତ ଭାରତର ସର୍ବାଞ୍ଚଳରେ ନିର୍ମିତ ଅସଂଖ୍ୟ ହିନ୍ଦୁ ଦେବାୟତନ, ମଠ ଓ ସ୍ତମ୍ଭ-ଗାତ୍ରରେ ଶିଳ୍ପକଳାରୂପେ ମୂର୍ତ୍ତିମାନ୍ ହୋଇଅଛି । ସେହିପରି ଉତ୍କଳରେ ଜୈନଧର୍ମର ଇତିହାସ ଏ ପ୍ରଦେଶସ୍ଥ ଜୈନକୀର୍ତ୍ତି ସକଳ ସ୍ୱଗାତ୍ରରେ ଧାରଣକରି ମହୀୟାନ୍ ହୋଇଅଛି ।

ଭାରତଗୌରବ ଅଶୋକଙ୍କ ରାଜତ୍ୱ କାଳରେ ଭାରତୀୟ ଶିଳ୍ପର ଇତିହାସରେ ନୂତନ ଯୁଗର ସୃଷ୍ଟିହେଲା । ଅଶୋକଙ୍କର ଅସଂଖ୍ୟ କୀର୍ତ୍ତି ଉତ୍ତର ଭାରତର ନାନାଞ୍ଚଳରୁ ଆବିଷ୍କୃତ ହୋଇଥିଲେ ମଧ୍ୟ ଉତ୍କଳରେ ତାଙ୍କର ସାମାନ୍ୟ କେତୋଟି କୀର୍ତ୍ତି ପ୍ରାଚୀନ କଳିଙ୍ଗ ରାଜଧାନୀ ତୋଷଳି ବା ଧଉଳି ନିକଟରେ ପରିଦୃଷ୍ଟ ହୁଏ । ସେଥିମଧ୍ୟରୁ ଧଉଳିପର୍ବତସ୍ଥ ଅଶୋକ ପ୍ରଶସ୍ତି

ଉପରେ ଖୋଦିତ ବିଶାଳ ହସ୍ତୀମୂର୍ତ୍ତି ଓ ତାହାର ନିକଟବର୍ତ୍ତୀ କେତେକ ଗୁମ୍ଫା ସର୍ବପ୍ରଧାନ । କିନ୍ତୁ ଧଉଳିର ଗୁମ୍ଫାଗୁଡ଼ିକ କ୍ଷୁଦ୍ର ଓ ଆଡ଼ମ୍ବରଶୂନ୍ୟ ଏବଂ ସେଗୁଡ଼ିକରେ କୌଣସି ଶିଳ୍ପ ଖୋଦିତ ହୋଇନାହିଁ । ଖାରବେଳଙ୍କ ଦ୍ୱାରା ନିର୍ମିତ ଖଣ୍ଡଗିରି ଓ ଉଦୟଗିରିର ଜୈନ କୀର୍ତ୍ତିସକଳ ଉତ୍କଳର ସର୍ବପ୍ରାଚୀନ କୀର୍ତ୍ତି ଏବଂ ସେ ଉତ୍କଳୀୟ ପ୍ରସ୍ତର-ଖୋଦନଶିଳ୍ପର ପ୍ରାଣପ୍ରତିଷ୍ଠାତା ବୋଲି ମନେହୁଏ । ସେ ହୃଦୟରେ ଧର୍ମର ଗଭୀର ପ୍ରେରଣା ଅନୁଭବ କରି ନିଜ ଧର୍ମର ଉନ୍ନତି ନିମିତ୍ତ ପର୍ବତଗାତ୍ରରେ ସର୍ବଜନପ୍ରଶଂସିତ ଅନେକଗୁଡ଼ିଏ କୀର୍ତ୍ତି ଖୋଦନ କରିଥିଲେ । ଐତିହାସିକ ବରୁଆଙ୍କ ମତରେ ସେ ପ୍ରସ୍ତର ଶିଳ୍ପର ଉନ୍ନତି ବିଷୟରେ ଅଶୋକଙ୍କ ସହିତ ସର୍ବଥା ତୁଳନୀୟ ।

"King Kharavela can equally claim the credit with Asoka for employing the Stone-cutters' Art successfully on an entensive scale for conjuring up all manners of figures even on the roofs of rock-cut caves."

ଖାରବେଳଙ୍କ ପୂର୍ବରୁ ଉତ୍କଳରେ ଖୋଦନଶିଳ୍ପ ପ୍ରସାର ଲାଭ କରିଥିଲା ସତ୍ୟ, କିନ୍ତୁ ତାଙ୍କ ସମୟରେ ଏହା ଅଭୂତପୂର୍ବ ଓ ଅସାଧାରଣ ଉନ୍ନତି ଲାଭ କରିଥିଲା । ହାତୀଗୁମ୍ଫା ଲେଖରୁ ଜଣାଯାଏ ଯେ, ସେ ରାଜତ୍ୱର ଶେଷବର୍ଷରେ କେତେକ ଚୈତ୍ୟ ଓ ସ୍ତମ୍ଭ ନିର୍ମାଣ କରିବାପାଇଁ ଅନେକ ଯୋଜନ ଦୂରବର୍ତ୍ତୀ ଶ୍ରେଷ୍ଠ ଖଣିମାନଙ୍କରୁ ୩୫ ଲକ୍ଷ ପଥର କଟାଇଥିଲେ । ଏହା ବ୍ୟତୀତ ସେ ଅଦ୍ଭୁତ

ଅନେକ କୀର୍ତ୍ତି ନିର୍ମାଣ କରିଥିଲେ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ତାଙ୍କ ସମୟରେ ଅସଂଖ୍ୟ ଲୋକ ଖଣିମାନଙ୍କରୁ ପ୍ରସ୍ତର ଉତ୍ତୋଳନ କାର୍ଯ୍ୟରେ ବ୍ୟସ୍ତ ଥିବେ । ପର୍ବତ ଫଟାଇ ଶତ ଶତ ବିଶାଳ ଗୁମ୍ଫା ଖୋଳିବାପାଇଁ ଅସଂଖ୍ୟ ଲୋକ ନିଯୁକ୍ତ ହୋଇଥିବେ । ଗୁମ୍ଫା ଗାତ୍ରରେ ସୂକ୍ଷ୍ମଶିଳ୍ପକଳା ଫୁଟାଇବା ପାଇଁ ସହସ୍ର ସହସ୍ର ଶିଳ୍ପୀ ବହୁବର୍ଷ ପରିଶ୍ରମ କରିଥିବେ । ସେ ଯୁଗରେ ପାହାଡ଼ ଫଟାଇବା ପାଇଁ ଡିନାମାଇଟ୍ ପାଉଡ଼ର ବା ତୋପ ଆବିଷ୍କୃତ ହୋଇ ନ ଥିଲା । ମନୁଷ୍ୟର ଦୈହିକ ଶକ୍ତିହିଁ ଏପରି ଦୁଃସାଧ୍ୟ କାର୍ଯ୍ୟ ସାଧନ କରୁଥିଲା । ଖାରବେଳଙ୍କ ଦ୍ୱାରା ପ୍ରତିପାଳିତ ଓ ଉତ୍ସାହିତ ହୋଇ ଉତ୍କଳୀୟ ଶିଳ୍ପିକୁଳ ଖୋଦନଶିଳ୍ପର ବିକାଶ ନିମିତ୍ତ ଏପରି ପ୍ରାଣପାତ ପରିଶ୍ରମ କରିଥିଲେ । ସେମାନଙ୍କ ବଂଶଧରମାନେ ପରବର୍ତ୍ତୀକାଳରେ ଲଳିତଗିରି, ରତ୍ନଗିରି, ଯାଜପୁର, ଭୁବନେଶ୍ୱର, ପୁରୀ, କୋଣାର୍କରେ ଅସଂଖ୍ୟ ଉତ୍ତୁଙ୍ଗ ମନ୍ଦିର ନିର୍ମାଣ କରି ଉତ୍କଳୀୟ ଶିଳ୍ପର ଉତ୍କର୍ଷର ଉନ୍ନତି କରିଥିଲେ । ଭାରତର ସାହିତ୍ୟ, ଶିଳ୍ପ, ବିଜ୍ଞାନ ପ୍ରତ୍ୟେକର ଉନ୍ନତି ମୂଳରେ ପ୍ରବଳ ଧର୍ମନିଷ୍ଠା ପ୍ରଚ୍ଛନ୍ନଭାବରେ ବିଦ୍ୟମାନ । ପ୍ରିୟଦର୍ଶୀ ଅଶୋକଙ୍କ ପ୍ରଗାଢ଼ ଧର୍ମନିଷ୍ଠା ଯୋଗୁ ସମଗ୍ର ଭାରତରେ ଓ ଭାରତ ବାହାରେ ପ୍ରାୟ ୮୪ ହଜାର ସ୍ତମ୍ଭ, ଅସଂଖ୍ୟ ଚୈତ୍ୟ, ସ୍ତୂପ, ବିହାର, ଗୁମ୍ଫା, ପାନ୍ଥଶାଳା, ଚିକିତ୍ସାଳୟ, କୂପ, ପୁଷ୍କରିଣୀ ନିର୍ମାଣ କରିବାକୁ ସେ ସମର୍ଥ ହୋଇଥିଲେ । ଉତ୍କଳର ଜୈନକୀର୍ତ୍ତି ସକଳ ସମ୍ରାଟ୍ ଖାରବେଳଙ୍କ ସ୍ୱ ଧର୍ମାନୁରାଗର ଜ୍ୱଳନ୍ତ ନିଦର୍ଶନ ।

ପ୍ରାଚୀନକାଳରେ ଜୈନ, ବୌଦ୍ଧ ଓ ହିନ୍ଦୁ ସନ୍ନ୍ୟାସୀମାନେ ପ୍ରାକୃତିକ ଗିରିଗହ୍ୱରମାନଙ୍କରେ ଅନନ୍ତ ନୀଳାକାଶ ଓ ବିରାଟ ପ୍ରକୃତିର ସୌନ୍ଦର୍ଯ୍ୟ ମଧ୍ୟରେ ବାସ କରି ବିଶ୍ୱସ୍ରଷ୍ଟା ଭଗବାନଙ୍କ ଧ୍ୟାନରେ ଏକାଗ୍ରଚିତ୍ତରେ ନିରତ ହେଉଥିଲେ । ସେମାନଙ୍କ ଶରୀରକୁ ଗ୍ରୀଷ୍ମର ପ୍ରଚଣ୍ଡ ରୌଦ୍ର, ଶୀତର ହୃତ୍‌କମ୍ପକାରୀ ଜାଡ୍ୟ, ବର୍ଷାର ବାତ୍ୟାବିତାଡ଼ିତ ବଜ୍ର-ଗର୍ଜନ-ଝଙ୍କାରିତ-ଧାରାପାତରୁ ରକ୍ଷା କରିବାପାଇଁ ପ୍ରଥମେ ପ୍ରିୟଦର୍ଶୀ ଅଶୋକ ଗୁମ୍ଫା ଖୋଳିବା ପ୍ରଥା ଆରମ୍ଭ କଲେ । ତାଙ୍କଦ୍ୱାରା ଜୈନ ଆଜୀବକମାନଙ୍କପାଇଁ ମଗଧର ଗୋରଥଗିରି (ବାରବାର ପର୍ବତ) ଓ ନାଗାର୍ଜୁନ ପର୍ବତରେ ଖୋଦିତ ଗୁମ୍ଫା ସକଳ ଭାରତର ସର୍ବପ୍ରାଚୀନ ଗୁମ୍ଫା । ଯେ କୌଣସି ପ୍ରକାରେ ଶରୀରକୁ ରକ୍ଷା କରିବା ଗୁମ୍ଫା ଖୋଦନର ଉଦ୍ଦେଶ୍ୟ ଥିଲା । ତେଣୁ ମାନବଦ୍ୱାରା ଖୋଦିତ ଗୁମ୍ଫାଗୁଡ଼ିକ ନାତି ଉଚ୍ଚ, କମନୀୟ, ଅପ୍ରଶସ୍ତ ଓ କ୍ଷୁଦ୍ର କ୍ଷୁଦ୍ର ଦ୍ୱାରଶୋଭିତ । ପ୍ରତ୍ୟେକଟିରୁ ଜଳନିର୍ଗମନ ପାଇଁ ପଥ ଥାଏ । ଖାରବେଳଙ୍କ ଲେଖର ବାରମ୍ବାର ବ୍ୟବହୃତ 'ଲେଣ' ଶବ୍ଦ ସମ୍ବନ୍ଧରେ ଆଲୋଚନା କଲେ ଶିଳ୍ପର ଇତିହାସ ସମ୍ୟକ୍ ବୋଧଗମ୍ୟ ହେବ । ପାଲିରେ ଲିଖିତ 'ବିନୟ ମହାବଗ୍ଗ' ଓ 'ବିନୟ ଚୁଲବଗ୍ଗ' ଗ୍ରନ୍ଥଦ୍ୱୟରେ 'ଲେଣ' ଶବ୍ଦର ବିସ୍ତୃତ ଆଲୋଚନା ହୋଇଛି । ଏଥିରୁ ଜଣାଯାଏ ଯେ, ଏହା ପାଞ୍ଚ ପ୍ରକାର, ସାଧକ-ନିବାସ; ଯଥା—(୧) ବିହାର, (୨) ଅଦ୍ଧଯୋଗ, (୩) ପ୍ରାସାଦ, (୪) ହର୍ମ୍ୟ ଓ (୫) ଗୁହା । ଏଗୁଡ଼ିକ ଏହାର ବିସ୍ତୃତ ଅର୍ଥ । ସଂକୀର୍ଣ୍ଣ ଅର୍ଥରେ ଏହାର ଅର୍ଥ ଗୁହା । ପ୍ରାକୃତିକ ଗିରିଗହ୍ୱର ଖୋଦନ ଶିଳ୍ପଦ୍ୱାରା ବିସ୍ତୃତ, ସୁନ୍ଦର ଓ ଚିକ୍କଣ ହୋଇ

ମନୁଷ୍ୟବାସୋପଯୋଗୀ ହେଲେ ତାକୁ ଲେଣ କୁହାଯାଏ । ବୁଦ୍ଧଘୋଷଙ୍କ ମତରେ କ୍ରମନିମ୍ନଭୂମିରେ ଖୋଦିତ କୌଣସି ଗୁହା ବା ପ୍ରାଚୀରବୃତ୍ତ କୌଣସି ନୈସର୍ଗିକ ଗହ୍ୱରକୁ ଲେଣ କୁହାଯାଏ ଏବଂ ଏଥିରେ କେବଳ ବସିବା ଓ ଶୋଇବାପାଇଁ ସୁବିଧା ହୁଏ †।

ଖାରବେଳଙ୍କ ପୂର୍ବରୁ ଉତ୍କଳରେ ଲେଣ ବା ଗୁମ୍ଫା ଖୋଦନ ପ୍ରଣାଳୀ ପ୍ରଚଳିତ ଥିଲେ ମଧ୍ୟ ସେ ଏହାର ସମ୍ୟକ୍ ବିକାଶପାଇଁ ଯତ୍ନ କରିଥିଲେ । ତେଣୁ ମଗଧରେ ଅଶୋକଙ୍କଦ୍ୱାରା ନିର୍ମିତ ଗୁମ୍ଫାମାନଙ୍କଠାରୁ ଖଣ୍ଡଗିରି ଓ ଉଦୟଗିରିର ଗୁମ୍ଫାସବୁ ଅଧିକ ଲମ୍ବ, ପ୍ରସ୍ଥ, ଉଚ୍ଚ, ମସୃଣ ଓ ସୁନ୍ଦର । ମଗଧର ଗୁମ୍ଫାମାନଙ୍କରେ ଅଟେଁ ବାରଣ୍ଡା ନାହିଁ, କିନ୍ତୁ ଉପରୋକ୍ତ ଜୈନ ଗୁମ୍ଫାମାନଙ୍କରେ ବହୁ ସ୍ତମ୍ଭଶୋଭିତ ବିସ୍ତୃତ ବାରଣ୍ଡାମାନ ରହିଛି । ଏହା ଉତ୍କଳୀୟ ଶିଳ୍ପର ଗୋଟିଏ ବିଶେଷତ୍ୱ । ଅଶୋକଙ୍କ ଅନୁକରଣରେ ସେ ସର୍ବପ୍ରଥମେ ଉତ୍କଳୀୟ ଶିଳ୍ପରେ ଆର୍ଯ୍ୟପାରସିକ ସ୍ତମ୍ଭ (Indo-Persepolitan Pillar) ପ୍ରଚଳନ କରିଥିଲେ । ଖଣ୍ଡଗିରିର ଅନନ୍ତ ଗୁମ୍ଫା ଓ ଉଦୟଗିରିର ରାଣୀହଂସପୁରରେ ଏ ପ୍ରକାର ସ୍ତମ୍ଭର ବ୍ୟବହାର ଦେଖାଯାଏ । ଏହାଦ୍ୱାରା ଉତ୍କଳୀୟ ଶିଳ୍ପରେ ସ୍ତମ୍ଭ ନିର୍ମାଣ ପ୍ରଣାଳୀର ଗୋଟିଏ ନୂତନଧାରା ପ୍ରଚଳିତ ହେଲା । ଅଧିକନ୍ତୁ ସେ ସମୟରେ ଉତ୍କଳୀୟ ଶିଳ୍ପୀମାନେ ବୌଦ୍ଧଶିଳ୍ପର ଅନୁକରଣରେ ଗୁମ୍ଫାଗୁଡ଼ିକରେ ରେଲିଙ୍ଗ ଓ କ୍ଷୁଦ୍ର ଚୈତ୍ୟର ମୂର୍ତ୍ତି ଖୋଦନ

---

† "ପଦ୍ଧରଂ ସନଦ୍ଧା ବା ଅତ୍ପଚହାସକଧ୍ଵାନେ ଭଲ୍ଲମ୍ ଲଥାପେଦ୍ଧା ବା କତଂ ଶେନାସନଂ"—ବୁଦ୍ଧଘୋଷ ।

କରିଥିଲେ । ସେମାନେ ଏକ ପ୍ରସ୍ତର ସ୍ତମ୍ଭର (Monolithic Pillar) ଗଠନ କୌଶଳ ଓ ବୈଚିତ୍ର୍ୟ ଏବଂ ସ୍ତୁପ ନିର୍ମାଣ ପ୍ରଣାଳୀ ପ୍ରାଚୀନ ବୌଦ୍ଧଶିଳ୍ପରୁ ଗ୍ରହଣ କରିଥିଲେ । ଉତ୍କଳୀୟ ଶିଳ୍ପ ବୌଦ୍ଧଶିଳ୍ପଦ୍ୱାରା ପ୍ରଭାବିତ ହେଲେ ମଧ୍ୟ ଜୈନ ଗୁମ୍ଫାମାନଙ୍କରେ ଖୋଦିତ ହସ୍ତୀ, ସ୍ତ୍ରୀ ଓ ଅନ୍ୟାନ୍ୟ ସାମାଜିକ ଚିତ୍ରମାନଙ୍କରେ ଉତ୍କଳୀୟ ଶିଳ୍ପୀ କେତେକ ନୂତନତ୍ୱ ଓ ବିଶେଷତ୍ୱ ପ୍ରକାଶ କରିଛନ୍ତି । ଜୈନଧର୍ମ ଉତ୍କଳରୁ ଲୁପ୍ତ ହୋଇଛି ସତ୍ୟ, କିନ୍ତୁ ଏହି ଧର୍ମଯୋଗୁ ହିଁ ଉତ୍କଳୀୟ ଶିଳ୍ପକଳା-କୁସୁମର ପ୍ରଥମ ବିକାଶ ଘଟିଥିଲା ।

**ଜୈନଧର୍ମ ଓ ଉତ୍କଳର ଭାଷା—** ପୂର୍ବକାଳରେ ଶିଳ୍ପ ପରି ଭାଷାର ମଧ୍ୟ ଧର୍ମ ସହିତ ଘନିଷ୍ଠ ସମ୍ପର୍କ ବିଦ୍ୟମାନ ଥିଲା । ଯେଉଁ ବିରାଟ ସଂସ୍କୃତ ସାହିତ୍ୟ ନିକଟରେ ସଭ୍ୟତାଭିମାନୀ ପାଶ୍ଚାତ୍ୟ ଜାତିମାନେ ବିସ୍ମୟରେ ନତମସ୍ତକ ହୁଅନ୍ତି, ତାହାର ଏବଂବିଧ ଉନ୍ନତି ସନାତନ ଆର୍ଯ୍ୟଧର୍ମର ବିକାଶ ଓ ଅଭିବୃଦ୍ଧି ଯୋଗୁ ସମ୍ଭବପର ହୋଇଥିଲା । ମଧ୍ୟଯୁଗରେ ବୈଷ୍ଣବଧର୍ମର ପ୍ରଚାର ଯୋଗୁ ହିନ୍ଦୀ, ଓଡ଼ିଆ ଓ ବଙ୍ଗଳା ସାହିତ୍ୟର ଯେ କି ଅସାଧାରଣ ଉନ୍ନତି ହୋଇଥିଲା ତାହା ପ୍ରତ୍ୟେକ ସାହିତ୍ୟିକଙ୍କୁ ସୁବିଦିତ । ଜୈନଧର୍ମର ପ୍ରଚାର ପୂର୍ବରୁ ଉତ୍କଳରେ ଆର୍ଯ୍ୟ ସଂସ୍କୃତଭାଷା ଓ ଦ୍ରାବିଡଭାଷାର ସଂମିଶ୍ରଣରେ ଉତ୍ପନ୍ନ ଏକ ଭାଷା ପ୍ରଚଳିତ ଥିବାର* ଭାଷାତତ୍ତ୍ୱବିତ୍

* ଖାରବେଳଙ୍କ ଲେଖଗୁଡିକରେ ଖାଟ, ଦଣ୍ଡ (ସେନା), କୋଠା (ପକ୍କା ବା ପଥର ଘର) ଘର, ଦହ (ଜଳପୂର୍ଣ୍ଣ ପୁଷ୍କରଣୀ) ପ୍ରଭୃତି ବହୁତ ଖାଣ୍ଟି ଓଡ଼ିଆ ଶବ୍ଦ ଦେଖାଯାଏ । ସେଥିରୁ ମନେହୁଏ, ଖ୍ରୀଷ୍ଟପୂର୍ବ ୨ୟ ଶତାବ୍ଦୀ ବେଳକୁ ଉତ୍କଳଭାଷାର ସୃଷ୍ଟି ହୋଇଥିଲା ।

# ଖାରବେଳ ଯୁଗର ବ୍ରାହ୍ମୀ ବର୍ଣ୍ଣମାଳା






ପଣ୍ଡିତମାନେ ମତ ପ୍ରକାଶ କରନ୍ତି; କିନ୍ତୁ ବହୁକାଳ ପର୍ଯ୍ୟନ୍ତ ଜୈନ-
ଧର୍ମର ପ୍ରଚାର ଫଳରେ ଉତ୍କଳୀୟ ଭାଷାରେ ପାଲିଭାଷାର ପ୍ରଭାବ
କ୍ରମଶଃ ବୃଦ୍ଧି ଲାଭ କଲା । ଆଧୁନିକ ଯୁଗର ଖ୍ରୀଷ୍ଟିୟାନ ପ୍ରଚାରକମାନେ
ଯେପରି ପାର୍ବତ୍ୟ ଜାତିମାନଙ୍କ ମଧ୍ୟରେ ଧର୍ମପ୍ରଚାର ସଙ୍ଗେ ସଙ୍ଗେ
ଓଡ଼ିଆ, ହିନ୍ଦୀ ପ୍ରଭୃତି ପ୍ରାଦେଶିକ ଭାଷା ପ୍ରଚଳନ କରୁଛନ୍ତି, ସେହି-
ସୁଦୂର ଅତୀତ କାଳରେ ଉତ୍କଳୀୟମାନଙ୍କୁ ଜୈନଯତି, ଶ୍ରମଣ ଓ
ପ୍ରଚାରକମାନେ ଉତ୍ତରଭାରତୀୟ ପାଲି ଭାଷାରେ ଧର୍ମଶିକ୍ଷା ଦେଉଥିଲେ ।
ଲେଖମାନଙ୍କରେ ଓ ଧର୍ମପ୍ରଚାରରେ ପାଲିଭାଷାର ବହୁଳ ବ୍ୟବହାର
ଫଳରେ ସେ ଯୁଗର ଉତ୍କଳୀୟ ଭାଷାରେ ଅସଂଖ୍ୟ ପାଲି ଶବ୍ଦ
ପ୍ରବେଶ କରିଥିଲା । ଏହା ଫଳରେ ଆଧୁନିକ ଓଡ଼ିଆଭାଷାର ଜନନୀ
ଉଡ୍ରପ୍ରାକୃତର ସୃଷ୍ଟି ହୋଇଥିଲା ଏବଂ ଏହା ଦ୍ରାବିଡ଼ ଭାଷାଠାରୁ କ୍ରମଶଃ
ପୃଥକ୍ ହୋଇ ଉତ୍ତରଭାରତୀୟ ଭାଷାଶ୍ରେଣୀର ଅନ୍ତର୍ଭୁକ୍ତ ହେଲା ।
ଜୈନଧର୍ମ ବର୍ତ୍ତମାନ ଉତ୍କଳରୁ ଲୁପ୍ତ, ଜୈନଧର୍ମ ପ୍ରଚାରର ଇତିହାସ
ଅତୀତର ଘନ ଅନ୍ଧକାରରେ ଆଚ୍ଛନ୍ନ; କିନ୍ତୁ ଜୈନଧର୍ମର ଭାଷା ହିଁ
(ପାଲି) କାଳକ୍ରମେ ନାନା ପରିବର୍ତ୍ତନ, ବିବର୍ତ୍ତନ ଓ ପରିବର୍ଦ୍ଧନ
ମଧ୍ୟରେ ଆଧୁନିକ ଓଡ଼ିଆଭାଷାରେ ପରିଣତ ହୋଇଅଛି ।

---

## ପଞ୍ଚମ ଅଧ୍ୟାୟ

# ଖାରବେଳଙ୍କ ଗାର୍ହସ୍ଥ୍ୟ ଜୀବନ, ସୈନ୍ୟବଳ, ଐଶ୍ୱର୍ଯ୍ୟ, ରାଜ୍ୟଶାସନ ପ୍ରଣାଳୀ, ବ୍ୟକ୍ତିତ୍ୱ ଓ ଭାରତ ଇତିହାସରେ ତାଙ୍କର ସ୍ଥାନ

**ଗୃହସ୍ଥାଶ୍ରମ**—କଳିଙ୍ଗ ସମ୍ରାଟ୍ ଖାରବେଳଙ୍କ ଗାର୍ହସ୍ଥ୍ୟ-ଜୀବନ ସମ୍ବନ୍ଧରେ ହାତୀଗୁମ୍ଫା ଲେଖରେ ବିଶେଷ ବର୍ଣ୍ଣନା ନାହିଁ । ସାଧାରଣ ଭାରତୀୟ ନୃପତିମାନଙ୍କ ପରି ସେ ବହୁ ଦାର ପରିଗ୍ରହ କରିଥିଲେ ଓ ନାନାଦେଶର ରାଜକନ୍ୟା ତାଙ୍କ ଅନ୍ତଃପୁରର ଶୋଭା-ବର୍ଦ୍ଧନ କରୁଥିଲେ । ଉଦୟଗିରିର ସ୍ୱର୍ଗପୁରୀ ଗୁମ୍ଫାରେ ଖୋଦିତ ଲେଖରୁ ଜଣାଯାଏ ଯେ, ଉକ୍ତ ଗୁମ୍ଫା ତାଙ୍କର ଅଗ ମହିଷୀ ବା ପାଟରାଣୀଙ୍କ ଦ୍ୱାରା ଖୋଦିତ ହୋଇଥିଲା । ସେ ହସ୍ତୀ ସାହ ବା ହସ୍ତୀ ସିଂହ ନାମକ ଲଲରାଜ୍ୟର ଅଧିପତିଙ୍କ କନ୍ୟା ଥିଲେ । ଲଲରାଜ୍ୟ ରାଢ଼ (ପଶ୍ଚିମ ବଙ୍ଗ) ବା ଲାଟ (ଗୁଜରାଟ) ସହିତ ଚିହ୍ନିତ ହୋଇପାରେ । ପାଟରାଣୀଙ୍କ ନାମ ଧୂସି ବୋଲି ସ୍ୱର୍ଗୀୟ ଜୟସ୍ୱାଲ ମତ ପ୍ରକାଶ କରିଥିଲେ । 'ଅଗ ମହିଷୀ' ଶବ୍ଦ ବ୍ୟବହାରରୁ ସ୍ପଷ୍ଟ ଜଣାଯାଏ ଯେ, ତାଙ୍କର ଅନ୍ୟାନ୍ୟ କେତେକ ରାଣୀ ମଧ୍ୟ ଥିଲେ । ସେମାନଙ୍କର ନାମ ଓ ସେମାନେ କେଉଁ କେଉଁ ଦେଶର ରାଜକନ୍ୟା ତାହା ଜଣାଯାଏ ନାହିଁ । ଉଦୟଗିରିର ମଞ୍ଚପୁରୀ, ଯମପୁରୀ ଓ ଛୋଟ ହାତୀଗୁମ୍ଫାରେ ଥିବା ବ୍ରାହ୍ମୀଲେଖମାନଙ୍କରୁ ତାଙ୍କର

ଦୁଇଟି ପୁଅ କଦର୍ପଶ୍ରୀ * ଓ ବରେଷଶ୍ରୀଙ୍କ ନାମ ମିଳେ । କଦର୍ପଶ୍ରୀ ସମ୍ରାଟ୍ ଖାରବେଳଙ୍କ ଦ୍ୱାରା ବ୍ୟବହୃତ ମହାରାଜା ମହାମେଘବାହନ, କଳିଙ୍ଗାଧିପତି ପ୍ରଭୃତି ବିରୁଦାବଳୀ ବ୍ୟବହାର କରିଥିବାରୁ ଏବଂ ପାଟରାଣୀଙ୍କ ଲେଖ ତାଙ୍କ ଲେଖ ନିକଟରେ ଅବସ୍ଥିତ ଥିବାରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ସେ ପାଟରାଣୀଙ୍କର ଜ୍ୟେଷ୍ଠପୁଅ ଏବଂ ଖାରବେଳଙ୍କ ପରେ କଳିଙ୍ଗ ସାମ୍ରାଜ୍ୟର ଉତ୍ତରାଧିକାରୀ ହୋଇଥିଲେ । ମାତାଙ୍କ କୀର୍ତ୍ତି ନିକଟରେ ପୁଅର କୀର୍ତ୍ତି ନିର୍ମାଣ ପ୍ରାଚୀନ ଭାରତର ଗୋଟିଏ ଚିରାଚରିତ ପ୍ରଥା । ତଦନୁଯାୟୀ କଦର୍ପଶ୍ରୀ ମାତାଙ୍କ ଗୁମ୍ଫା ନିକଟରେ ପରମପୂଜ୍ୟା ଜନନୀଙ୍କ ପ୍ରତି ଭକ୍ତି ଓ ସ୍ନେହର ନିଦର୍ଶନ ସ୍ୱରୂପ ଗୋଟିଏ ଗୁମ୍ଫା ଖୋଳାଇଥିଲେ । କୁମାର ବଡ଼ୁଖ ବା ବରେଷଶ୍ରୀଙ୍କ ଦ୍ୱାରା ଖୋଦିତ ଯମପୁରୀ ଗୁମ୍ଫା ମଞ୍ଚପୁରୀ ଗୁମ୍ଫାର ଗୋଟିଏ ଅଂଶ ହୋଇଥିବାରୁ ଓ ଉଭୟ ରାଜକୁମାରଙ୍କ ଲେଖ ପରସ୍ପରଠାରୁ ଅଦୂରରେ ଖୋଦିତ ହୋଇଥିବାରୁ କଦର୍ପ ଓ ବରେଷ ସହୋଦର ଭ୍ରାତା ଥିବାର ମନେହୁଏ । ଅନ୍ୟାନ୍ୟ ରାଣୀମାନଙ୍କ ଗର୍ଭଜାତ ସନ୍ତାନମାନଙ୍କର ନାମ ଓ ସେମାନଙ୍କର କୀର୍ତ୍ତିକଳାପ ସମ୍ବନ୍ଧରେ ଲେଖଗୁଡ଼ିକ ନୀରବ । ନିଜର ପୂର୍ବଜନ୍ମର ସୁକୃତ ଓ ଭାଗ୍ୟବଳରୁ ଖାରବେଳଙ୍କ ଦାମ୍ପତ୍ୟ-ଜୀବନ ସୁଖମୟ ଥିଲା ଏବଂ ମୃତ୍ୟୁ ପୂର୍ବରୁ ସେ ଯୁବରାଜ କଦର୍ପଶ୍ରୀଙ୍କଠାରେ ବିଶାଳ ସାମ୍ରାଜ୍ୟର ଶାସନଭାର ଅର୍ପଣ କରି ଶାନ୍ତିରେ ପ୍ରାଣ ବିସର୍ଜନ କରିଥିଲେ ।

---

* ଅର୍ୟସ୍ୟ ମହାରାଜସ୍ୟ କଳିଙ୍ଗାଧିପତିମହାମେଘବାହନସ୍ୟ ଶ୍ରୀ କଦର୍ପସ୍ୟ ଲୟନଂ ।

କୁମାର ବଡୁଖସ୍ୟ (ବରେଷସ୍ୟ) ଲୟନଂ (ସଂସ୍କୃ ଭାଷାନୁବାଦ)

**ସୈନ୍ୟବଳ**— ସମଗ୍ର ଭାରତ ବିଜୟ ଓ ବିଶାଳ ସାମ୍ରାଜ୍ୟ ପ୍ରତିଷ୍ଠାରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ଖାରବେଳ ବିରାଟ ସେନା-ବାହିନୀର ଅଧିକାରୀ ଥିଲେ । ରାଜତ୍ୱର ଦ୍ୱିତୀୟ ବର୍ଷରେ ସେ ସମଗ୍ର ଦକ୍ଷିଣାପଥର ଅଧିପତି ସାତକର୍ଣ୍ଣୀଙ୍କୁ ନର, ଗଜ, ରଥ, ତୁରଙ୍ଗ ସମନ୍ୱିତ ଚତୁରଙ୍ଗ ବଳ ସଙ୍ଗରେ ନେଇ ସମ୍ପୂର୍ଣ୍ଣରୂପେ ପରାସ୍ତ କରିଥିଲେ । ଏଥିରୁ ସ୍ପଷ୍ଟ ଜଣାଯାଏ, ତାଙ୍କ ରାଜତ୍ୱ ପୂର୍ବରୁ କଳିଙ୍ଗର ବିରାଟ ସେନାବାହିନୀ ଥିଲା ଓ ତାହା ସାହାଯ୍ୟରେ ସେ ରାଜତ୍ୱର ପ୍ରାରମ୍ଭରେ ଏପରି ଦୁଃସାଧ୍ୟ ଅଭିଯାନରେ ପ୍ରବୃତ୍ତ ହେବାକୁ ସାହସୀ ହୋଇଥିଲେ । ମେଗାସ୍ଥିନିସଙ୍କ ବିବରଣୀରୁ ଜଣାଯାଏ ଯେ, ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ସମୟରେ କଳିଙ୍ଗରେ ୬୦ ହଜାର ପଦାତି, ୧୦୦୦ ଅଶ୍ୱ, ୭୦୦ ଯୁଦ୍ଧାଶ୍ୱ ଓ ବହୁସହସ୍ର ହସ୍ତୀ ଥିଲେ । ଏହି ସୈନ୍ୟସଂଖ୍ୟା ଅଶୋକଙ୍କ ସମୟରେ ବୃଦ୍ଧିଲାଭ କରିଥିଲା; କାରଣ ଭାରତପ୍ରସିଦ୍ଧ କଳିଙ୍ଗଯୁଦ୍ଧରେ କଳିଙ୍ଗର ଦେଢ଼ ଲକ୍ଷ ସୈନ୍ୟ ବନ୍ଦୀ ଓ ଦେଶାନ୍ତରିତ ଏବଂ ପ୍ରାୟ ଏକଲକ୍ଷ ସୈନ୍ୟ ରଣଭୂମିରେ ପ୍ରାଣତ୍ୟାଗ କରିଥିଲେ ଏବଂ ବହୁସଂଖ୍ୟକ ସୈନ୍ୟ କ୍ଷତ ବିକ୍ଷତ ଓ ଆହତ ହୋଇଥିଲେ । ଅଶୋକଙ୍କ ସମୟରେ କଳିଙ୍ଗ ରାଜାଙ୍କର ପ୍ରାୟ ପାଞ୍ଚଲକ୍ଷ ସୈନ୍ୟ ଥିବାର ପ୍ରସିଦ୍ଧ ଐତିହାସିକ ରାଧାକୁମୁଦ ମୁଖାର୍ଜୀ ସ୍ଥିର କରିଛନ୍ତି । ଅଶୋକଙ୍କ ସମୟରେ ସେମାନେ କେବଳ ରାଜ୍ୟରକ୍ଷା କାର୍ଯ୍ୟରେ ବ୍ୟାପୃତ ଥିଲେ । କିନ୍ତୁ ଖାରବେଳଙ୍କ ରାଜତ୍ୱରେ କଳିଙ୍ଗ ସୈନ୍ୟମାନେ ରାଜ୍ୟରକ୍ଷା ଓ ସମଗ୍ର ଭାରତ ବିଜୟରେ ନିୟୋଜିତ ହୋଇଥିଲେ । ତାହାହେଲେ ଖାରବେଳଙ୍କ ସୈନ୍ୟସଂଖ୍ୟା ଅଶୋକଙ୍କ ସମୟର

ସୈନ୍ୟସଂଖ୍ୟା ଅର୍ଥାତ୍ ୫ ଲକ୍ଷ ଅପେକ୍ଷା ନିଶ୍ଚୟ ଅଧିକ ଥିଲା । ମୌର୍ଯ୍ୟସାମ୍ରାଜ୍ୟ ପ୍ରତିଷ୍ଠାତା ଚନ୍ଦ୍ରଗୁପ୍ତ ନବଗଠିତ ସାମ୍ରାଜ୍ୟରେ ନିଜର ଆଧିପତ୍ୟ ଅକ୍ଷୁଣ୍ଣ ରଖିବା ପାଇଁ ପ୍ରାୟ ଛଅ ଲକ୍ଷ ସୈନ୍ୟ ରଖିଥିଲେ । ଭାରତବିଜୟୀ ଖାରବେଳଙ୍କ ସାମ୍ରାଜ୍ୟ ଚନ୍ଦ୍ରଗୁପ୍ତଙ୍କ ସାମ୍ରାଜ୍ୟଠାରୁ ଆକାରରେ ବରଂ ବୃହତ୍ତର ଥିଲା ! କାରଣ ସମଗ୍ର ଦାକ୍ଷିଣାତ୍ୟ ଚନ୍ଦ୍ରଗୁପ୍ତ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିବାର କୌଣସି ବିଶ୍ୱାସଯୋଗ୍ୟ ପ୍ରମାଣ ମିଳିନାହିଁ । କିନ୍ତୁ ଖାରବେଳ ଅକ୍ଳମାଣି ବିସ୍ତୃତ ସମଗ୍ର ଦକ୍ଷିଣାପଥରେ ନିଜର ଆଧିପତ୍ୟ ବିସ୍ତାର କରିଥିଲେ । ତେଣୁ ତାଙ୍କର ପ୍ରାୟ ଛଅ ଲକ୍ଷ ବା ତତୋଧିକ ସୈନ୍ୟ ଥିବା ସମ୍ପୂର୍ଣ୍ଣ ସମ୍ଭବପର । ତେଣୁ ହାତୀଗୁମ୍ଫା ଲେଖ ବ୍ୟବହୃତ 'ଅପ୍ରତିହତ-ଚକ୍ର (ସେନା)-ବାହନ ବଳ' ଶବ୍ଦ ତାଙ୍କଠାରେ ସର୍ବାଦୌ ପ୍ରଯୁଜ୍ୟ ।

କଳିଙ୍ଗ-ସେନା ନିଜର ବୀରତ୍ୱ, ସାହସ, ଧୈର୍ଯ୍ୟ ଓ ରଣ-ନୈପୁଣ୍ୟ ଯୋଗୁ ସମଗ୍ର ଭାରତରେ ଅଜେୟ ବୋଲି ଖ୍ୟାତିଲାଭ କରିଥିଲା । ବିଶ୍ୱବିଜୟୀ ନେପୋଲିୟନଙ୍କ ପରି ସମ୍ରାଟ୍ ଖାରବେଳ ସୈନ୍ୟମାନଙ୍କୁ ଜାତୀୟ ଭାବରେ ଉଦ୍‌ବୁଦ୍ଧ କରୁଥିଲେ ଏବଂ ଅତୀତର ଗୌରବମୟ ଚିତ୍ର କଳିଙ୍ଗର ଉଜ୍ଜ୍ୱଳ ଭବିଷ୍ୟତର ଆଲେଖ୍ୟ ସେମାନଙ୍କ ମାନସ-ପଟରେ ଅଙ୍କନ କରି ସେମାନଙ୍କୁ ମାତୃଭୂମିର ମଙ୍ଗଳ ପାଇଁ ନିଜର ଜୀବନ ଓ ଧନ ଅକାତରରେ ଉତ୍ସର୍ଗ କରିବାକୁ ପ୍ରରୋଚିତ ଓ ଉତ୍ସାହିତ କରୁଥିଲେ । ଏହା-ଫଳରେ କଳିଙ୍ଗ ସୈନ୍ୟଗଣ ସର୍ବଦା ଯୁଦ୍ଧ ପାଇଁ ପ୍ରସ୍ତୁତ ଥିଲେ ଏବଂ ରାଜାଦେଶ ମାତ୍ରେ ଶତ ଶତ ସୈନିକ ରଣାଙ୍ଗନକୁ ଅମ୍ଳାନ-ବଦନରେ ଲମ୍ଫ ପ୍ରଦାନ କରୁଥିଲେ ।

**ଐଶ୍ୱର୍ଯ୍ୟ—** ପୃଥିବୀପ୍ରସିଦ୍ଧ ତାଜମହଲ ଓ ମୋତିମସ୍‌ଜିଦର ନିର୍ମାତା ବିଳାସୀ-ଶିରୋମଣି ମୋଗଲ ସମ୍ରାଟ୍ ସାହଜାହାନଙ୍କ ପରି ଖାରବେଳଙ୍କ ରାଜକୋଷ ଅପରିମିତ ଧନରତ୍ନରେ ପୂର୍ଣ୍ଣ ଥିଲା । ତାଙ୍କ ପୂର୍ବରୁ କଳିଙ୍ଗ ରାଜକୋଷରେ ବିପୁଳ ଧନରତ୍ନ ସଞ୍ଚିତ ହୋଇଥିଲା । ବ୍ରହ୍ମ, ଶ୍ୟାମ ପ୍ରଭୃତି ସାଗର ପରବର୍ତ୍ତୀ ଦୂରଦେଶ ଏବଂ ଯବ, ସୁମାତ୍ରା ଓ ସିଂହଳ ପ୍ରଭୃତି ଦ୍ୱୀପମାନଙ୍କରେ ବାଣିଜ୍ୟ ବ୍ୟବସାୟ ଫଳରେ ସେ ଯୁଗରେ କଳିଙ୍ଗକୁ ଧନସ୍ରୋତ ପ୍ରବାହିତ ହେଉଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଧନୀ ବ୍ୟବସାୟୀମାନେ ଦୁର୍ଲ୍ଲଭ ମଣି-ମୁକ୍ତା-ପ୍ରବାଳାଦି ରତ୍ନମାନ ଅଚଳା ଭକ୍ତିର ନିଦର୍ଶନ ସ୍ୱରୂପ ରାଜାଙ୍କୁ ପବିତ୍ର ଦିବସମାନଙ୍କରେ ଉପହାର ଦେଇ ରାଜ-କୋଷ ବୃଦ୍ଧି କରୁଥିଲେ । ବିଶାଳ ସାମ୍ରାଜ୍ୟରୁ କର, ଶୁଳ୍କ ଓ ପଣ୍ୟ ପ୍ରଭୃତି ଦ୍ୱାରା ବିପୁଳ ଅର୍ଥ ସଂଗୃହୀତ ହେଉଥିଲା । ବାରମ୍ବାର ଯୁଦ୍ଧଯାତ୍ରା କରି ସେ ପରାଭୂତ ଓ ପଦାନତ ନୃପତିମାନଙ୍କଠାରୁ ନାନାବିଧ ଧନରତ୍ନ, ମୂଲ୍ୟବାନ ପରିଚ୍ଛଦ ଏବଂ ମୁକ୍ତିପଣ ସ୍ୱରୂପ ବିପୁଳ ଅର୍ଥ ଗ୍ରହଣ କରି ନିଜ ରାଜକୋଷର ଶ୍ରୀବୃଦ୍ଧି ସାଧନ କରୁଥିଲେ । ସାମନ୍ତ ପାଣ୍ଡ୍ୟରାଜା, ବାସୁକୀ ( ନାଗବଂଶୀୟ ରାଜା ) ଓ ବିଦ୍ୟାଧରମାନେ ସମୟ ସମୟରେ ତାଙ୍କୁ ବହୁ ଧନରତ୍ନ ଉପହାର ଦେଇଥିଲେ । ଏହିପରି ବହୁ ଉପହାରରେ ଧନରତ୍ନ ସଂଗ୍ରହ କରି ସେ କଳିଙ୍ଗ ରାଜଭଣ୍ଡାର ପୂର୍ଣ୍ଣ କରିଥିଲେ । ସୁରୁ-କଳାଶୋଭିତ ଦୁର୍ଲ୍ଲଭ ଦୁର୍ମୂଲ୍ୟ ଆଭରଣ ଓ ପରିଚ୍ଛଦମାନ ଭଣ୍ଡାରରେ ସହସ୍ର ସହସ୍ର ସଂଖ୍ୟାରେ ପରିପୂର୍ଣ୍ଣ ଥିଲା । ରାଜଧାନୀ ଓ ରାଜ୍ୟର ବିଭିନ୍ନ କେନ୍ଦ୍ରରେ ବିଶାଳ ଶସ୍ୟାଗାରମାନ ପ୍ରତିଷ୍ଠିତ

ହୋଇଥିଲା । ତାଙ୍କ ଭଣ୍ଡାରରେ ହୀରା, ନୀଳା, ମଣି, ମୁକ୍ତା, ବୈଦୁର୍ଯ୍ୟ, ପ୍ରବାଳ ପ୍ରଭୃତି ମୂଲ୍ୟବାନ ରତ୍ନମାନ ଓ କୋଟି କୋଟି ମୁଦ୍ରା ସଞ୍ଚିତ ହୋଇଥିଲା । ତାଙ୍କଦ୍ୱାରା ଅଷ୍ଟତ୍ରିଂଶ ଲକ୍ଷ ମୁଦ୍ରା ବ୍ୟୟରେ ବୈଦୁର୍ଯ୍ୟ-ମଣ୍ଡିତ ବିଶାଳ ମହାବିଜୟ ପ୍ରାସାଦ ଏବଂ ରାଜତ୍ୱର ଶେଷ ବର୍ଷରେ ପ୍ରାୟ ପଚିଶ ଲକ୍ଷ ମୁଦ୍ରା ବ୍ୟୟରେ ଉଦୟଗିରି ନିକଟରେ ବୈଦୁର୍ଯ୍ୟ-ଖଚିତ ଚୈତ୍ୟଗୃହ ପ୍ରଭୃତିର ନିର୍ମାଣ ତାଙ୍କର ବିପୁଳ ବିଭବର ପରିଚୟ ଦିଏ । ନାନା କାରୁକାର୍ଯ୍ୟଖଚିତ, ନାନାଭରଣଭୂଷିତ, ନାନା ରତ୍ନବିମଣ୍ଡିତ ଉକ୍ତ ପ୍ରାସାଦଯୁଗଳ କାଳସ୍ରୋତର ଭୀଷଣ ପ୍ରବାହରେ ଧ୍ୱଂସ ପାଇଛି ସତ୍ୟ; କିନ୍ତୁ ଏ ଦୁଇଟି ହର୍ମ୍ୟ ସେ ଯୁଗର ପ୍ରାସାଦଗୋଷ୍ଠୀରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଥିବ, ଏଥିରେ ସନ୍ଦେହ ନାହିଁ । ସେ ମୌର୍ଯ୍ୟସମ୍ରାଟ୍ ଚନ୍ଦ୍ରଗୁପ୍ତଙ୍କ ତୁଲ୍ୟ ପ୍ରାୟ ୬ଲକ୍ଷ ସୈନ୍ୟ, ଅସଂଖ୍ୟ କର୍ମଚାରୀ ଓ ଭୃତ୍ୟଙ୍କୁ ଗ୍ରାସାଚ୍ଛାଦନ ପ୍ରଦାନ କରି ଚିରସ୍ଥାୟୀ ଭାବରେ ପ୍ରତିପୋଷଣ ଏବଂ ଯୁଦ୍ଧୋପଯୋଗୀ ତଥା ଭାରବାହୀ ହସ୍ତୀ, ଅଶ୍ୱ, ମହିଷ, ବଳଦ, ଗର୍ଦ୍ଦଭ, ଉଷ୍ଟ୍ର ପ୍ରଭୃତି ପଶୁ ସହସ୍ର ସଂଖ୍ୟାରେ ପ୍ରତିପାଳନ କରିବାକୁ ସମର୍ଥ ହୋଇଥିଲେ । ରାଜକୋଷରେ ଅଗଣନ ଧନ ଥିବାରୁ ସେ ରାଜ୍ୟାଭିଷେକ ପରେ ବହୁଲକ୍ଷ ବ୍ୟୟକରି କଳିଙ୍ଗ ନଗରସ୍ଥ ପ୍ରାଚୀନ କୀର୍ତ୍ତିମାନଙ୍କର ଜୀର୍ଣ୍ଣସଂସ୍କାର କରିଥିଲେ । ସେ ରାଜତ୍ୱର ପଞ୍ଚମ ବର୍ଷରେ ସ୍ୱୀୟ ରାଜଧାନୀର ପ୍ରଣାଳୀ ଖୋଦନକାର୍ଯ୍ୟରେ ଏକଲକ୍ଷ, ସପ୍ତମ ବର୍ଷରେ ଉତ୍ସବ ସମାଜ ଇତ୍ୟାଦି କାର୍ଯ୍ୟରେ ବହୁଲକ୍ଷ, ପିତୃପୁରୁଷମାନଙ୍କର ଶ୍ରାଦ୍ଧ ଓ ଯଜ୍ଞ ସଂସ୍କାରକାର୍ଯ୍ୟରେ ଏକଲକ୍ଷ, ରାଜତ୍ୱର ଶେଷ ବର୍ଷରେ ଉଦୟଗିରିରେ ୧୧୭ଟି ଗୁମ୍ଫା ଖୋଦନକାର୍ଯ୍ୟରେ ବହୁଲକ୍ଷ ଏବଂ

ରାଜତ୍ୱର ଦ୍ୱିତୀୟ, ଚତୁର୍ଥ, ଅଷ୍ଟମ ଓ ଦ୍ୱାଦଶ ବର୍ଷରେ ସୁଦ୍ଧାଭି-ଯାନରେ ଲକ୍ଷ ଲକ୍ଷ ମୁଦ୍ରା ଅକୁଣ୍ଠିତ ଚିତ୍ତରେ ବ୍ୟୟ କରିବାକୁ ସମର୍ଥ ହୋଇଥିଲେ । ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ଅପ୍ରକାଶିତ ଶତ ଶତ ପ୍ରଜାହିତକର କାର୍ଯ୍ୟରେ ସେ ଯେ ଅକାତରରେ ଲକ୍ଷ ଲକ୍ଷ ମୁଦ୍ରା ବ୍ୟୟ କରିଥିବେ, ଏଥିରେ ସନ୍ଦେହ ନାହିଁ । ଏ ସକଳ କାର୍ଯ୍ୟକଳାପ ତାଙ୍କର ବିପୁଳ ଐଶ୍ୱର୍ଯ୍ୟ, ଅସାଧାରଣ ଦାନଶୀଳତା ଓ ପ୍ରଜାବାତ୍ସଲ୍ୟର ସ୍ପଷ୍ଟ ପ୍ରମାଣ । ନିଜର ମହନୀୟ ଅକ୍ଷୟ କୀର୍ତ୍ତିକଳାପ ଓ ଅସାଧାରଣ ଦେଶପ୍ରାଣତା ଯୋଗୁ ସେ ଭାରତ ତଥା ପୃଥିବୀର ପ୍ରସିଦ୍ଧ ସମ୍ରାଟମାନଙ୍କ ସହିତ ସମକକ୍ଷ ଓ ସମାସୀନ ବୋଲି ବିବେଚିତ ହୁଅନ୍ତି ।

**ରାଜ୍ୟଶାସନ ପ୍ରଣାଳୀ**—ଖାରବେଳ ରାଜ୍ୟଶାସନ ସମ୍ବନ୍ଧରେ କଳିଙ୍ଗର ପୂର୍ବ ରାଜାମାନଙ୍କର ପନ୍ଥାଙ୍କ ଅନୁସରଣ କରିଥିଲେ ଓ ପୂର୍ବ ପ୍ରଚଳିତ ଶାସନପ୍ରଣାଳୀକୁ ଅକ୍ଷୁଣ୍ଣ ରଖିଥିଲେ । ତାଙ୍କ ଶାସନପ୍ରଣାଳୀ ସମ୍ବନ୍ଧରେ ହାତୀଗୁମ୍ଫା ଲେଖରୁ କୌଣସି ସ୍ପଷ୍ଟ ସୂଚନା ନ ମିଳିଲେ ମଧ୍ୟ ଏହା ଯେ ମୁଖ୍ୟତଃ ରାଜତନ୍ତ୍ର ଥିଲା ଏଥିରେ ସନ୍ଦେହର ଅବକାଶ ନାହିଁ । ଭାରତର ପ୍ରାଚୀନ ରାଜାଦର୍ଶ ଅନୁସରଣଦ୍ୱାରା ପ୍ରଜାବର୍ଗଙ୍କ ହିତସାଧନ ତାଙ୍କ ଶାସନର ମୂଳମନ୍ତ୍ର ଥିଲା । ସେଥିପାଇଁ ସେ ପ୍ରଜାମାନଙ୍କୁ କରପୀଡ଼ା ନ ଦେଇ କୃଷି, ଶିଳ୍ପ, ବାଣିଜ୍ୟର ଉନ୍ନତି ସାଧନ; ସ୍ୱଦେଶକୁ ବୈଦେଶିକ ଆକ୍ରମଣ, ଅନ୍ତର୍ବିବାଦ, ଅରାଜକତାରୁ ରକ୍ଷା; ଶାନ୍ତି, ଶୃଙ୍ଖଳା ଓ ନ୍ୟାୟର ପ୍ରତିଷ୍ଠା ଏବଂ ନାନାବିଧ ହିତକର କୀର୍ତ୍ତିକଳାପ ସ୍ଥାପନ କରିଥିଲେ ।

ଧର୍ମ ସମ୍ବନ୍ଧରେ ସେ ଉଦାର ନୀତି ଅବଲମ୍ବନ କରିଥିଲେ । ସେ ଓ ତାଙ୍କର ପୂର୍ବପୁରୁଷ ଏବଂ ପରିବାରର ଅନ୍ୟାନ୍ୟମାନେ ସମସ୍ତେ ଜୈନଧର୍ମାବଲମ୍ବୀ ଥିଲେ । କିନ୍ତୁ ସମ୍ରାଟ୍ ଅଶୋକ ବୌଦ୍ଧଧର୍ମର ଉନ୍ନତିପାଇଁ ଯେପରି ମନଃପ୍ରାଣ ଢାଳି ଦେଇଥିଲେ, ସେ ନିଜର କୁଳାଚରିତ ଜୈନଧର୍ମର ପ୍ରସାର ପାଇଁ ସେପରି କରି ନ ଥିଲେ । ଅଶୋକଙ୍କ ପିତୃ ପିତାମହ ଓ ସେ ନିଜେ ପ୍ରଥମ ଜୀବନରେ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀ ଥିଲେ; କିନ୍ତୁ ବୌଦ୍ଧଧର୍ମ ଗ୍ରହଣ କରି ସେ ନବଦୀକ୍ଷିତ-ସୁଲଭ ଅପୂର୍ବ ଉତ୍ସାହ, ପ୍ରଗାଢ଼ ଧର୍ମନିଷ୍ଠା ଓ ଅସାଧାରଣ ଧର୍ମପ୍ରାଣତା ପ୍ରକାଶ କରିଥିଲେ । ରାଜ୍ୟଲିପ୍ସୁ ସାମ୍ରାଜ୍ୟ-ପ୍ରତିଷ୍ଠାବ୍ରତ ସ୍ୱଦେଶପ୍ରାଣ ସମ୍ରାଟ୍ ଖାରବେଳଙ୍କ ଜୀବନରେ ପ୍ରଗାଢ଼ ଧର୍ମନିଷ୍ଠା ବା ସ୍ୱଧର୍ମ ପ୍ରଗ୍ଭର ପାଇଁ ଅଦମ୍ୟ ଉତ୍ସାହ ଦେଖାଯାଏ ନାହିଁ । ସେ ଜୈନ ଥିଲେ ମଧ୍ୟ ସେ ଯୁଗର ଅନ୍ୟାନ୍ୟ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀ ରାଜାମାନଙ୍କ ପରି ବାଲ୍ୟ ଓ ଯୌବନ ଶିକ୍ଷା ସମାପ୍ତ କରିଥିଲେ । ତାଙ୍କର ରାଜ୍ୟାଭିଷେକ କାର୍ଯ୍ୟ ବୈଦିକ ବିଧାନାନୁଯାୟୀ ସମ୍ପନ୍ନ ହୋଇଥିଲା । ସେ ପ୍ରାଚୀନ ସ୍ମୃତିସମ୍ମତ-ପ୍ରଣାଳୀରେ ରାଜ୍ୟଶାସନ କରୁଥିଲେ । ଜୈନ ହୋଇ ମଧ୍ୟ ସେ ପ୍ରଜାରଞ୍ଜନ ପାଇଁ ଜୈନ ଧର୍ମଶାସ୍ତ୍ର ନିଷିଦ୍ଧ ସମାଜ, ଉତ୍ସବ, ନୃତ୍ୟ, ଗୀତ, ଦର୍ପ† ଇତ୍ୟାଦିରେ ଅମ୍ଳାନ ବଦନରେ ଯୋଗଦାନ କରୁଥିଲେ । ସେ ଧର୍ମବିଜୟ ବା ଧର୍ମଘୋଷ ପରିବର୍ତ୍ତିରେ

† ଦର୍ପ—ଏକପ୍ରକାର କଉତୁକ କ୍ରୀଡ଼ା ; ଏଥିରେ ମଦ୍ୟପାନ, ଅମିତାଚାର, କାମୁକତା ଇତ୍ୟାଦିକୁ ପ୍ରଶ୍ରୟ ଦିଆ ଯାଉଥିଲା । ଅର୍ଥଶାସ୍ତ୍ରରେ ଉଚ୍ଚକୁଳର ବଧୂ ଓ କନ୍ୟାମାନଙ୍କ ଦର୍ପକ୍ରୀଡ଼ା ଦେଖିବା ନିଷିଦ୍ଧ ଥିଲା ।

ଭେଦ୍ଧିଦୋଷର ପକ୍ଷପାତୀ ଥିଲେ । ଜୈନଧର୍ମର ପ୍ରଧାନ ନୀତି ଅହିଂସାଦ୍ୱାରା ପ୍ରଣୋଦିତ ହୋଇ ସେ ଯୁଦ୍ଧ ଓ ନରହତ୍ୟାରୁ ନିବୃତ୍ତ ହୋଇ ନ ଥିଲେ । ପରନ୍ତୁ ନିଜର ସମଗ୍ର ଜୀବନ ଯୁଦ୍ଧ ଓ ରାଜ୍ୟଜୟରେ କଟାଇଥିଲେ । ସେ ଜୈନଧର୍ମର ଉନ୍ନତି ଓ ପ୍ରସାର ପାଇଁ ନାନାବିଧ କୀର୍ତ୍ତି ପ୍ରତିଷ୍ଠା କରିଥିଲେ ସତ୍ୟ; କିନ୍ତୁ ଅନ୍ୟାନ୍ୟ ଧର୍ମପ୍ରତି ତାଙ୍କର ଯଥେଷ୍ଟ ଶ୍ରଦ୍ଧା ଓ ଭକ୍ତି ମଧ୍ୟ ଥିଲା । ନିଜ ଲେଖରେ ସେ 'ସବ *ପାଷଣ୍ଡ-ପୂଜକ' ଓ 'ସବ ଦେବାୟତନ ସଂସ୍କାର କାରକ' ପ୍ରଭୃତି ଉପାଧିରେ ମଣ୍ଡିତ ହେବାକୁ ଗର୍ବ ଅନୁଭବ କରୁଥିଲେ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ସକଳ ଧର୍ମାବଲମ୍ବୀ ସମାନଭାବରେ ତାଙ୍କର ସ୍ନେହ, ଶ୍ରଦ୍ଧା ଓ ଅନୁଗ୍ରହ ଲାଭ କରୁଥିଲେ । ପ୍ରାଚୀନ ଭଗ୍ନ ହିନ୍ଦୁ ମନ୍ଦିରମାନଙ୍କର ସଂସ୍କାର କାର୍ଯ୍ୟକୁ ସେ ପବିତ୍ର ବୋଲି ମନେ କରୁଥିଲେ । ମଥୁରା ବିଜୟ ସମୟରେ ସେ ବ୍ରାହ୍ମଣମାନଙ୍କୁ ଭୁରିଭୋଜନ ଓ ବିପୁଳ ଅର୍ଥ ଦାନଦ୍ୱାରା ସନ୍ତୁଷ୍ଟ କରିଥିଲେ । ସାର୍ବଜନୀନ ମୈତ୍ରୀଭାବ ଓ ଧର୍ମ ସମ୍ବନ୍ଧରେ ସାମ୍ୟ ଓ ଉଦାର ନୀତି ଅବଲମ୍ବନରେ ସେ ମୌର୍ଯ୍ୟସମ୍ରାଟ୍ ଅଶୋକଙ୍କର ସମକକ୍ଷ ଥିଲେ । ଏହି ଉଦାର ନୀତି ଓ ମହାନୁଭବତା ଯୋଗୁ ସେ କଳିଙ୍ଗବାସୀ ସକଳ ସଂପ୍ରଦାୟର ଶ୍ରଦ୍ଧା ଓ ପ୍ରୀତି ଆକର୍ଷଣ କରିଥିଲେ ।

**ବ୍ୟକ୍ତିତ୍ୱ**—ଖାରବେଳ ଜଣେ ଜାତୀୟ ଭାବାପନ୍ନ ଆଦର୍ଶ ସମ୍ରାଟ୍ ଥିଲେ । ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ଦେଶପ୍ରାଣତା,

---

* ପାଷଣ୍ଡ—ଧର୍ମାବଲମ୍ବୀ; ଏହା ଅଶୋକଙ୍କ ଲେଖମାନଙ୍କରେ ମଧ୍ୟ ଉକ୍ତ ଅର୍ଥରେ ବ୍ୟବହୃତ ହୋଇଅଛି ।

ସ୍ୱଦେଶବାତ୍ସଲ୍ୟ ପ୍ରକାଶିତ ହୋଇଥିଲା । ନିଜର ବଂଶ, ରାଜ୍ୟ ଓ ପ୍ରଜାବର୍ଗଙ୍କର ଗୌରବ ଓ ଖ୍ୟାତି ବୃଦ୍ଧି ତାଙ୍କ ଜୀବନର ପ୍ରଧାନ ଲକ୍ଷ୍ୟ ଥିଲା । ସେଥିପାଇଁ ସେ ହାତୀଗୁମ୍ଫା ଲେଖରେ ବାରମ୍ବାର ନିଜର ବଂଶ, ରାଜ୍ୟ, ରାଜଧାନୀ ଓ ପ୍ରଜାବର୍ଗଙ୍କ ବିଷୟ ଉଲ୍ଲେଖ କରିଛନ୍ତି । ଏ ବିଷୟରେ ସେ ସ୍ୱନାମଧନ୍ୟ ସମ୍ରାଟ୍ ଅଶୋକଙ୍କଠାରୁ ପୃଥକ୍ ଥିଲେ । ଅଶୋକ ନିଜର କାର୍ଯ୍ୟକଳାପ ଯୋଗୁ ସମଗ୍ର ଜଗତରେ ଖ୍ୟାତିଲାଭ କରିଥିଲେ ସତ୍ୟ, କିନ୍ତୁ ସେ ମୌର୍ଯ୍ୟବଂଶ ଓ ବିଶାଳ ମଗଧ ସାମ୍ରାଜ୍ୟ ଯୋଗୁ ଗର୍ବ ଓ ଆନନ୍ଦ ଅନୁଭବ କରୁ ନ ଥିଲେ । ତାଙ୍କର ଶତ ଶତ ଲେଖ ଆବିଷ୍କୃତ ହୋଇଥିଲେ ମଧ୍ୟ କୁତ୍ରାପି ମୌର୍ଯ୍ୟବଂଶର ନାମ ମିଳେ ନାହିଁ । ରାଜପରିବାର ସମ୍ବନ୍ଧରେ ସେଗୁଡ଼ିକ ନୀରବ । ହାଇଦ୍ରାବାଦ ରାଜ୍ୟ ଅନ୍ତର୍ଗତ ମାସ୍କିରୁ ପ୍ରାପ୍ତ ଶିଳାଲେଖ ବ୍ୟତୀତ ତାଙ୍କର ତଥା ତାଙ୍କ ପରିବାରର ଶତ ଶତ ଲେଖରେ ଅଶୋକଙ୍କ ନାମ ସୁଦ୍ଧା ମିଳେ ନାହିଁ । କେବଳ ବରହୁତ ସ୍ତୂପରେ ଥିବା ଗୋଟିଏ ଲେଖରେ ସେ ନିଜକୁ ମଗଧରାଜା ବୋଲି ଅଭିହିତ କରିଅଛନ୍ତି । ଦେବପ୍ରିୟ ପ୍ରିୟଦର୍ଶୀ ଅଶୋକ ରାଜା ହୋଇ ମଧ୍ୟ ଜଣେ ଧର୍ମପ୍ରଚାରକ ଓ ଧର୍ମସଂସ୍କାରକ ମହାପୁରୁଷ ହେବା ପାଇଁ ଚେଷ୍ଟା କରିଥିଲେ । ମହାମାନବ ଗୌତମ ବୁଦ୍ଧଙ୍କର ପବିତ୍ର ଧର୍ମପ୍ରଚାର ତାଙ୍କ ଜୀବନର ପ୍ରଧାନ ଲକ୍ଷ୍ୟ ଥିଲା; ତେଣୁ ସେ ନିଜତ୍ୱକୁ ଲୋପ କରି ଏହି ପବିତ୍ର କାର୍ଯ୍ୟରେ ମନ, ପ୍ରାଣ ଓ ଧନ ଉତ୍ସର୍ଗ କରିଥିଲେ । ଅଶୋକଙ୍କ ମହାମାନବସୁଲଭ ବ୍ୟକ୍ତିତ୍ୱ ବିରାଟ, ପବିତ୍ର ଓ ମହୀୟାନ୍ ହେଲେ ମଧ୍ୟ ଖାରବେଳ ନିଜର ମହନୀୟ ଅକ୍ଷୟ କୀର୍ତ୍ତିକଳାପ ଓ ଅସାଧାରଣ ଦେଶପ୍ରାଣତା ଯୋଗୁ ଭାରତ ତଥା

ପୃଥିବୀର ପ୍ରସିଦ୍ଧ ସମ୍ରାଟମାନଙ୍କ ସହିତ ସମକକ୍ଷ ଓ ସମାସୀନ ବୋଲି ବିବେଚିତ ହୁଅନ୍ତି ।

## ଭାରତ ଇତିହାସରେ ଖାରବେଳଙ୍କ ସ୍ଥାନ —

ଖାରବେଳ ନିଜର ନାନାବିଧ ସଦ୍‌ଗୁଣ, ଲୋକହିତକର କାର୍ଯ୍ୟକଳାପ ଓ ବିଶାଳ ସାମ୍ରାଜ୍ୟର ପ୍ରତିଷ୍ଠା ଯୋଗୁ ପ୍ରାଚୀନ ଭାରତ ଇତିହାସରେ ଗୋଟିଏ ଉଚ୍ଚତମ ସ୍ଥାନ ଅଧିକାର କରିବା ପାଇଁ ସର୍ବଥା ଯୋଗ୍ୟ । ମହୋଦାର ଧର୍ମସାମ୍ୟ, ସାର୍ବଜନୀନ ମୈତ୍ରୀଭାବ ଓ ମହାନୁଭବତା ବିଷୟରେ ପୁଣ୍ୟଶ୍ଳୋକ ବୌଦ୍ଧସମ୍ରାଟ୍ ଅଶୋକ ବିଶାଳ ସାମ୍ରାଜ୍ୟର ପ୍ରତିଷ୍ଠାତାରୂପେ ମୌର୍ଯ୍ୟ ଚନ୍ଦ୍ରଗୁପ୍ତ ଓ ଗୁପ୍ତବଂଶାବତଂସ ଭାରତବିଜୟୀ ସମୁଦ୍ରଗୁପ୍ତଙ୍କ-ଠାରୁ ସେ କୌଣସି ପ୍ରକାର ନ୍ୟୂନ ନୁହନ୍ତି । ତାଙ୍କର ଦେଶପ୍ରାଣତା ପ୍ରାଚୀନ ଭାରତର ଅନ୍ୟାନ୍ୟ ପ୍ରସିଦ୍ଧ ନରପତିମାନଙ୍କଠାରେ କ୍ୱଚିତ୍ ଦେଖାଯାଏ ।

ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖ ମଧ୍ୟ ଗୋଟିଏ ଅଦ୍ୱିତୀୟ ଜୀବନ ବୃତ୍ତାନ୍ତ । ଅଶୋକ, ସମୁଦ୍ରଗୁପ୍ତ ପ୍ରଭୃତି ପ୍ରସିଦ୍ଧ ନୃପତିମାନଙ୍କ ପ୍ରଶସ୍ତିରେ ସ୍ୱ ସ୍ୱ ଜୀବନର ଘଟଣାବଳୀର ଧାରାବାହିକତା ଓ ପୌର୍ବାପର୍ଯ୍ୟ ପ୍ରତି ଆଦୌ ଦୃଷ୍ଟି ଦିଆଯାଇ ନାହିଁ; କିନ୍ତୁ ଖାରବେଳ ନିଜ ଜୀବନର ପ୍ରସିଦ୍ଧ ଘଟଣାବଳୀ ସମୟାନୁକ୍ରମରେ ତଥା ଧାରାବାହିକ ଭାବରେ ଲିପିବଦ୍ଧ କରି ସମଗ୍ର ଭାରତ ସମ୍ମୁଖରେ ଗୋଟିଏ ଉଚ୍ଚ ଆଦର୍ଶ ଉପସ୍ଥାପିତ କରିଛନ୍ତି । ଅନ୍ୟାନ୍ୟ ପ୍ରାଚୀନ ନରପତିମାନଙ୍କ ଦ୍ୱାରା ଉକ୍ତ ଆଦର୍ଶ ଅନୁସୃତ ହୋଇଥିଲେ ଆଜି ଭାରତର ଧାରାବାହିକ ଇତିହାସ ସଙ୍କଳନ ସହଜ ଓ ସୁଗମ

ହୋଇଥାନ୍ତା ଏବଂ ଉଜ୍ଜ୍ୱଳ ଆଲୋକପାତ ଦ୍ୱାରା ପ୍ରାଚୀନ ଭାରତ ଇତିହାସର ନାନାସ୍ଥାନରେ ପୁଞ୍ଜୀଭୂତ ଅନ୍ଧକାରରାଶି ଦୂରୀଭୂତ ହୋଇ ସମଗ୍ର ଜାତିର ବିରାଟ ମହିମାମୟ ଇତିବୃତ୍ତ ଦେଦୀପ୍ୟମାନ ହୋଇଥାନ୍ତା । କଳିଙ୍ଗର ପ୍ରାଚୀନ ଇତିହାସ ରୂପ ଅନ୍ଧକାରାଚ୍ଛନ୍ନ ଗଗନପଟରେ ସମ୍ରାଟ୍ ଖାରବେଳ ନବୋଦିତ ଦିନମଣି ତୁଲ୍ୟ ନିଜର କନକ-କିରଣଜାଳ ବିସ୍ତାର କରି ସ୍ୱୀୟ ଜନ୍ମଭୂମି ତଥା ପୁଣ୍ୟଭୂମି ଭାରତବର୍ଷର ମୁଖ ଉଜ୍ଜ୍ୱଳ କରିଥିଲେ ।

---

## ଷଷ୍ଠ ଅଧ୍ୟାୟ

## ହାତୀଗୁମ୍ଫା ଶିଳାଲେଖ

ଭୁବନେଶ୍ୱରର ନିକଟବର୍ତ୍ତୀ ଉଦୟଗିରିରେ ଥିବା ଭାରତ-ବିଖ୍ୟାତ ହାତୀଗୁମ୍ଫା ଶିଳାଲେଖ ବହୁଯୁଗ ପର୍ଯ୍ୟନ୍ତ ମୂକ ଓ ପ୍ରାଣହୀନ ଅବସ୍ଥାରେ ରହିଥିଲା । ଦୁଇହଜାର ବର୍ଷ ପୂର୍ବର କଳିଙ୍ଗର ଗୌରବମୟ ଇତିହାସ ଉତ୍କଳୀୟମାନଙ୍କ ପ୍ରାଣରେ ସ୍ପନ୍ଦନ ଆଣୁ ନ ଥିଲା । ତ୍ରିକଳିଙ୍ଗାଧିପତି ଭାରତବିଜୟୀ ଖାରବେଳଙ୍କ ବିରାଟ ପ୍ରଶସ୍ତି କୌଣସି ଐତିହାସିକଙ୍କର ଦୃଷ୍ଟି ଆକର୍ଷଣ କରୁ ନ ଥିଲା; କିନ୍ତୁ ଗତ ଶତାବ୍ଦୀର ପ୍ରଥମ ପାଦରେ ତାହାର ଦୁର୍ଦ୍ଦଶା-ରଜନୀର ଅବସାନ ହେଲା; ଖାରବେଳଙ୍କ ରାଜତ୍ୱର ବିଭବମୟ ଇତିହାସ ଜଗତ୍ ସମ୍ମୁଖରେ ପ୍ରଚାର କରିବା ପାଇଁ ପ୍ରଥମେ ପ୍ରାତଃସ୍ମରଣୀୟ ଷ୍ଟାର୍ଲିଙ୍ଗ ବ୍ରତୀ ହୋଇଥିଲେ । ସେ ପ୍ରଥମେ ଏହି

ବୃହତ୍ ଶିଳାଲେଖର ଗୋଟିଏ ହସ୍ତଲିପି ୧୮୨୭ସାଲରେ ଏସିଆଟିକ୍ ସୋସାଇଟି ପତ୍ରିକାରେ ପ୍ରକାଶ କରିଥିଲେ । ସେହି ଦିନୁ ଏହା ଭାରତର ପ୍ରବୀଣ ପ୍ରତ୍ନତତ୍ତ୍ୱାନ୍ୱେଷୀମାନଙ୍କର ଦୃଷ୍ଟି ଆକର୍ଷଣ କରିଅଛି । ସ୍ୱର୍ଗୀୟ ଷ୍ଟାର୍ଲିଙ୍ଗଙ୍କ ପରେ ଜେମସ୍ ପ୍ରିନ୍‌ସେପ୍, ଜେନେରାଲ୍ କନିଙ୍ଗହାମ୍ ଓ ରାଜେନ୍ଦ୍ରଲାଲ୍ ମିତ୍ର ପ୍ରମୁଖ ବିଖ୍ୟାତ ଐତିହାସିକମାନେ ଏହି ଲିପି ପାଠ କରିବାକୁ ବହୁଚେଷ୍ଟା କରିଥିଲେ । କିନ୍ତୁ ଦୁଃଖର ବିଷୟ, ଏମାନେ ଖାରବେଳଙ୍କ ନାମ ପର୍ଯ୍ୟନ୍ତ ପଢ଼ିବାକୁ ସମର୍ଥ ହୋଇ ନ ଥିଲେ । ସ୍ୱର୍ଗୀୟ ପଣ୍ଡିତ ଭଗବାନଲାଲ ଇନ୍ଦ୍ରଜିତ ପ୍ରଥମେ ଏହି ଲେଖ ପ୍ରାୟ ଶୁଦ୍ଧଭାବରେ ପାଠ କରି ଏହାର ବିଶଦ ଆଲୋଚନା କରିବାକୁ ସମର୍ଥ ହୋଇଥିଲେ । ତାଙ୍କର ପ୍ରଗାଢ଼ ପରିଶ୍ରମ ଓ ଏକାନ୍ତ ଅଧ୍ୟବସାୟ ଯୋଗୁ ଏହି ଲେଖର ଅଧିକାଂଶ ସର୍ବଜନବୋଧ ହୋଇପାରିଥିଲା । ସେ ଏ ବିଷୟରେ ୧୯୦୭ ମସିହାରେ ଗୋଟିଏ ସୁଚିନ୍ତିତ ଗବେଷଣାପୂର୍ଣ୍ଣ ପ୍ରବନ୍ଧ ଆନ୍ତର୍ଜାତିକ ପ୍ରାଚ୍ୟ ଇତିହାସ ପରିଷଦରେ ପାଠ କରିଥିଲେ । ମଧ୍ୟ ଏହି ଲେଖର କେତେକାଂଶ ଦୁର୍ବୋଧ ହୋଇ ରହିଥିଲା । ପରିଶେଷରେ ୧୯୧୭ ମସିହାରେ ଭାରତର ବିଖ୍ୟାତ ଐତିହାସିକ ସ୍ୱର୍ଗୀୟ କାଶୀପ୍ରସାଦ ଜୟସ୍ୱାଲ୍ ବହୁବର୍ଷବ୍ୟାପୀ ସାଧନା ଫଳରେ ଏହି ଲେଖର ସମସ୍ତ ଅଂଶ ସୁସ୍ପଷ୍ଟଭାବରେ ବିହାର ଓଡ଼ିଶା ପ୍ରତ୍ନତତ୍ତ୍ୱ ପତ୍ରିକାରେ ପ୍ରକାଶ କରିଥିଲେ । ତାଙ୍କର ଅଧ୍ୟାଧ ପରିଶ୍ରମ ଫଳରେ ଦୁଇହଜାର ବର୍ଷର କଳିଙ୍ଗ ଇତିହାସ ଲୋକସମାଜରେ ପ୍ରଚରିତ ହେଲା । କଳିଙ୍ଗ ସମ୍ରାଟ୍ ଭାରତବିଜୟୀ ଖାରବେଳଙ୍କ ଲୁପ୍ତ ଗୌରବଗାଥାର ପୁନରୁଦ୍ଧାର କରି ସେ

ଓଡ଼ିଆଜାତିର କୃତଜ୍ଞତାଭାଜନ ହୋଇଅଛନ୍ତି । ତାଙ୍କ ଯୋଗୁ ଆଜି ଉତ୍କଳବାସୀ ଖାରବେଳଙ୍କୁ ଚିହ୍ନିବାକୁ ସମର୍ଥ ହୋଇଛନ୍ତି ! ଇଂରେଜୀରେ 'ଓଡ଼ିଶାର ଇତିହାସ' ପ୍ରଣେତା ସ୍ୱର୍ଗୀୟ ରାଖାଲଦାସ ବାନର୍ଜୀ ମହାଶୟ ଜୟସ୍ୱାଲଙ୍କ ପାଠକୁ ଗ୍ରହଣ କରିଛନ୍ତି । କିନ୍ତୁ ଅଧ୍ୟାପକ ଶ୍ରୀଯୁକ୍ତ ବିଜୟଚନ୍ଦ୍ର ମଜୁମଦାର, ଶ୍ରୀଯୁକ୍ତ ରମାପ୍ରସାଦ ଚନ୍ଦ ଓ କଲିକତା ବିଶ୍ୱବିଦ୍ୟାଳୟର ପାଲିଭାଷାର ଅଧ୍ୟାପକ ଶ୍ରୀଯୁକ୍ତ ବେଣିମାଧବ ବରୁଆ ପ୍ରଭୃତି ବହୁ ଅକାଟ୍ୟ ଯୁକ୍ତି ସାହାଯ୍ୟରେ ଜୟସ୍ୱାଲଙ୍କ ପାଠରେ କେତେକ ଭ୍ରମପ୍ରମାଦ ପ୍ରଦର୍ଶନ କରିଛନ୍ତି । ବରୁଆ ମହାଶୟ ପାଞ୍ଚ ବର୍ଷକାଳ ପ୍ରଗାଢ଼ ପରିଶ୍ରମ କରି "ଖଣ୍ଡଗିରି ଓ ଉଦୟଗିରି*"ର ବ୍ରାହ୍ମୀଲେଖ ସକଳ ଗୋଟିଏ ଗ୍ରନ୍ଥରେ ପ୍ରକାଶ କରିଛନ୍ତି । ସ୍ୱର୍ଗୀୟ ରାଖାଲଦାସ ବାନର୍ଜୀ ହାତୀଗୁମ୍ଫା ଓ ଅନ୍ୟାନ୍ୟ ଗୁମ୍ଫାମାନଙ୍କରେ ଥିବା ଲେଖ-ସକଳ ପାଠ କରି Epigraphica Indica. Vol. XIII ରେ ପ୍ରକାଶ କରିଥିଲେ । କିନ୍ତୁ ଏମାନଙ୍କ ମଧ୍ୟରେ କୌଣସି ସମ୍ପର୍କ ଥିବାର ପ୍ରମାଣ କରି ନ ଥିଲେ । ବରୁଆ ମହାଶୟ ସେମାନଙ୍କ ମଧ୍ୟରେ ସମ୍ପର୍କ ଥିବାର ପ୍ରମାଣ କରିଛନ୍ତି ଓ ପ୍ରଶସ୍ତିର ଅନେକ ଦୁର୍ବୋଧ ଅଂଶ ସୁସ୍ପଷ୍ଟ କରିଛନ୍ତି । ଏଗୁଡ଼ିକ କଳିଙ୍ଗର ପ୍ରାୟ ଅର୍ଦ୍ଧଶତାବ୍ଦୀର ଇତିହାସ । ଦୁଃଖର ବିଷୟ, କୌଣସିଟିରେ ରଚୟିତାର ନାମ ନାହିଁ । କେଉଁ ଅଜ୍ଞାତ କାଳିଦାସ, ହରିସେନ ବା ବାଣଭଟ୍ଟଙ୍କ ତୁଲ୍ୟ କବି ଖାରବେଳଙ୍କ ସଭା ମଣ୍ଡନ କରୁଥିଲେ ତାହା ଜାଣିବା କଷ୍ଟସାଧ୍ୟ । ଏହାର ଭାଷା ଲଳିତ ଓ ସୁନ୍ଦର । ପାଲିରେ ଲିଖିତ

* Old Brahmi Inscriptions of Khandagiri & Udayagiri.

ଲିଖ୍ୟାତ 'ମିଲନ୍ଦ ପାହ୍ନ'ର ଭାଷା ସହିତ ଏହାର ସାମଞ୍ଜସ୍ୟ ଥିବାର ସେ ନିର୍ଦ୍ଦେଶ କରିଛନ୍ତି । ବରୁଆ ମହାଶୟ ନିମ୍ନୋକ୍ତ କେତେକ ବିଷୟରେ ଜୟସ୍ୱାଲଙ୍କଠାରୁ ପୃଥକ୍ ମତ ଦେଇଛନ୍ତି ।

ବରୁଆଙ୍କ ସମସ୍ତ ମତ ଗ୍ରାହ୍ୟ ନ ହେଲେ ମଧ୍ୟ ଐତିହାସିକ-ମାନଙ୍କର ବିଚାର ପାଇଁ ତାଙ୍କର ପୃଥକ୍ ମତମାନ ଏଠାରେ ଦିଆଯାଉଛି । (୧) ହାତୀଗୁମ୍ଫା ଲେଖରେ ନନ୍ଦାବ୍ଦର କୌଣସି ସୂଚନା ନାହିଁ । (୨) 'ଗୋରଥଗିରି' ଜଣେ ଲୋକର ନାମ ବୋଲି ସେ ସ୍ଥିର କରିଛନ୍ତି । (୩) ଏଥିରେ ରଷ୍ଟି, ଖଦ୍ଧୀରଙ୍କ ସମ୍ବନ୍ଧରେ କୌଣସି କିମ୍ବ-ଦନ୍ତୀ ନାହିଁ । (୪) ଏଥିରେ ଯବନରାଜ ଦ୍ମିମିତ ବା Demetriousଙ୍କ ମଥୁରା ପରିତ୍ୟାଗ ସମ୍ବନ୍ଧରେ କୌଣସି ସୂଚନା ନାହିଁ । (୫) ଏଥିରେ କଳିଙ୍ଗର ଲୋକସଂଖ୍ୟା ଆଦୌ ବର୍ଣ୍ଣିତ ହୋଇନାହିଁ । (୬) ପିଥୁଣ୍ଡ ବା ପିଥୁଣ୍ଡ ନଗର ଗଧ ଯୋଗୁ ହୋଇଥିବା ହଳରେ କୃଷ୍ଟ ହୋଇଥିବାର କୌଣସି ବର୍ଣ୍ଣନା ନାହିଁ । (୭) ତାମିଲ ରାଜ୍ୟସଂଘ ସମ୍ବନ୍ଧରେ ଏଥିରୁ କୌଣସି ପ୍ରମାଣ ମିଳେ ନାହିଁ । (୮) ଏଥିରେ ମୌର୍ଯ୍ୟାବ୍ଦ ଓ ଖାରବେଳଙ୍କ ରାଜତ୍ୱରେ ଜୈନଧର୍ମ ଗ୍ରନ୍ଥମାନଙ୍କର ପ୍ରଧାନ ବିଭାଗ ବିଷୟରେ କୌଣସି ପ୍ରମାଣ ନାହିଁ । ଦ୍ୱିତୀୟ ମତ ବ୍ୟତୀତ ତାଙ୍କର ଅନ୍ୟାନ୍ୟ ମତମାନ ବିଶେଷ ବିଶ୍ୱାସ୍ୟ-ଯୋଗ୍ୟ ଥିବାରୁ ମୁଁ ସାମାନ୍ୟ ପରିବର୍ତ୍ତନ କରି ଗ୍ରହଣ କରିଅଛି ।

ହାତୀଗୁମ୍ଫା 'ଉଦୟଗିରିର ଗୋଟିଏ ବିଶାଳ ଗିରିଗହ୍ୱର । ଏହାର ଉପର ପାଖରେ ୧୭ ଧାଡ଼ି ବିଶିଷ୍ଟ ବ୍ରାହ୍ମୀ ଶିଳାଲେଖଟିରେ ଖାରବେଳ ପ୍ରଶସ୍ତି ବର୍ଣ୍ଣିତ ହୋଇଅଛି । ଏତଦ୍‌ବ୍ୟତୀତ ଏହି ଗୁମ୍ଫାରେ ଥିବା ଅନ୍ତର ଅନେକ କ୍ଷୁଦ୍ର କ୍ଷୁଦ୍ର ଲେଖ ଅଦ୍ୟାବଧି

ପଠିତ ବା ସୁରକ୍ଷିତ ହୋଇ ନାହିଁ । ଅନେକ ଶିକ୍ଷିତ ଲୋକଙ୍କର ଧାରଣା ଯେ, ଖଣ୍ଡଗିରି ଓ ଉଦୟଗିରି ଗୁମ୍ଫାସବୁ ବୌଦ୍ଧ-ସନ୍ୟାସୀ-ମାନଙ୍କ ନିମିତ୍ତ ଖୋଦିତ ହୋଇଥିଲା । କିନ୍ତୁ ଏହି ଧାରଣା ସମ୍ପୂର୍ଣ୍ଣ ଭ୍ରମାତ୍ମକ । ଖାରବେଳ ପରମ ଜୈନ ଥିଲେ ଓ ତାଙ୍କ ସମୟରେ ଖୋଦିତ ଗୁମ୍ଫାସବୁ ଜୈନ ମୁନିଋଷିମାନଙ୍କ ବ୍ୟବହାର ପାଇଁ ଖୋଦିତ ହୋଇଥିଲା । ଏହି ଲେଖଟି ସମଗ୍ର ଭାରତରେ ଗୋଟିଏ ପ୍ରଧାନ ଜୈନଲେଖ । ଏହି ଲେଖର ଦକ୍ଷିଣରେ 'ବଦ୍ଧ ମଙ୍ଗଳ', 'ବୃକ୍ଷ ଚୈତ୍ୟ' ଓ ବାମଭାଗରେ 'ସ୍ୱସ୍ତିକ' ଓ 'ନନ୍ଦୀପଦ' ପ୍ରଭୃତି ଜୈନ ସଙ୍କେତମାନ ଶିଳା ଦେହରେ ଖୋଦିତ ହୋଇଅଛି । ଉତ୍କଳୀୟ ଐତିହାସିକ ଓ ଶିକ୍ଷିତ ଜନସାଧାରଣଙ୍କ ପ୍ରକୃତତତ୍ତ୍ୱ ଗବେଷଣା ଓ ଆଲୋଚନା ନିମିତ୍ତ ଉକ୍ତ ଶିଳାଲେଖର ମୂଳ, ସଂସ୍କୃତାନୁବାଦ ଓ ଓଡ଼ିଆ ଅନୁବାଦ ନିମ୍ନରେ ପ୍ରଦତ୍ତ ହେଲା ।

## ହାତୀଗୁମ୍ଫା ଶିଳାଲେଖ (ବରୁଅଙ୍କ ପାଠ)

### —ମୂଳ—



ବଦ୍ଧ ମଙ୍ଗଳ ସଙ୍କେତ

**ପ୍ରଥମ ଧାଡ଼ି**— ନମୋ ଅରହଂତାନଂ, ନମୋ ସବ-ସିଧାନଂ, ଏରେନ ମହାରାଜେନ ମହାମେଘବାହନେନ ଚେତ—ରାଜବଂଶ ବଧନେନ ପସଥ-ଶୁଭ-ଲଖନେନ, ଚତୁରଂତ (ରଖଣ)-ଗୁଣ ଉପତେନ, କଲିଙ୍ଗାଧିପତିନା, ସିରି ଖାରବେଳେନ ।



ନନ୍ଦୀପଦ ସଙ୍କେତ

**ଦ୍ୱିତୀୟ ଧାଡ଼ି**—ପଂଦରସ-ବସାନି ସିରିକଡ଼ାର-ସରୀରବତା କୀଡ଼ତା କୁମାର କୀଡ଼କୀ । ତତୋ ଲେଖ-ରୂପ-ଗଣନା-ବବହାର - ବିଧି ବିସାରଦେନ ସବ-ବିଜାବଦାତେନ ନବବସାନି ଯୋବରଜଂ ବସାସିତଂ । ସଂପୁଣ ଚତୁବିସତି ବସୋ ସୋଦାନି ବଧମାନସେସ ଯୋବନାଭିଜୟୋ ତତିୟେ

**ତୃତୀୟ ଧାଡ଼ି**—କଳିଙ୍ଗ ରାଜବଂସେ ପୁରିସଯୁଗେ ମହା-ରାଜାଭିସେଚନଂ ପାପୁନାତି । ଅଭିସିତୋମତୋ ଚ ପଧମେ ବସେ ବାତ-ବିହତ-ଗୋପୁର ପାକାର-ନିବେସନଂ ପଟିସଂଖାରୟତି କଲିଂଗ ନଗରି । ଗଭୀର ସୀତଲ-ତଡ଼ାଗ-ପାଡ଼ିୟୋ ଚ ବଂଧାପୟତି । ସବୁୟାନ ପଟି ସଂଠାପନଂ

**ଚତୁର୍ଥ ଧାଡ଼ି**— ଚ କାରୟତି ପନତିସାହି ସତ-ସହ-ସେହି । ପକତିୟୋ ଚ ରଂଜୟତି । ଦୂତିୟେ ଚ ବସେ ଅଚିତୟିତା ସାତକଣିଂ ପଛିମଦିସଂ ହୟ-ଗଜ-ନର-ରଧ-ବହୁଲଂ ଦଂଡ଼ଂ ପଠାପୟତି । କଲିଂଗା ଗତୟା ଚ ସେନାୟ ବିତାସେତି ଅସକ-ନଗରଂ (ଅସିକ 'ନଗରମିତି ବା) । ତତିୟେ ପୁନ ବସେ ,

**ପଞ୍ଚମ ଧାଡ଼ି**—ଗଂଧବ-ଵେଦ-ବୁଧୋଦଂପ ନତଗୀତବାଦିତ



ସ୍ୱସ୍ତିକ ସଙ୍କେତ

ସଂଦସନାହି ଉସବ-ସମାଜ ଚ କାରାପନାହି ଚ କୀଡ଼ା-ପୟତି ନଗରୀଂ । ତଥା ଚ ଚୁଥେ ଵସେ ଵିଜାଧରାଧିଵାସଂ ଅହରତ-ପୁରଂ† କଲିଙ୍ଗ ପୁବରାଜାନଂ ଧମେନବ ନିତନାବ ପସାସୟତି ସଦାତ ଧମକୁଟେନ । ଭିଙ୍ଗ-ଉସିତେ ଚ ନିଖିତ-ଛତଭିଂଗାରେ

**ଷଷ୍ଠ ଧାଡ଼ି**—ହିତରତନ ସାପତେୟେ ସବରଟିକ-ଭୋଜକେ ପାଦେ ବଂଦାପୟତି । ପଂଚମେ ଚ ଦାନୀ ଵସେ ନନ୍ଦରାଜ—ତିଵସସତ-ଓଘାଟିତଂ-ତନସୁଲିୟବାଟା * ପନାଡ଼ିଂ ନଗରଂ ପବେସୟତି ସତସହସେହି ଚ ଖନାପୟତି । ଅଭିସିତୋ ଚ ଛଟେ ଵସେ ରାଜସିରିଂ ସଂଦଂସୟଂତୋ ।

**ସପ୍ତମ ଧାଡ଼ି**—ସବ-କର-ପଣ-ଅନୁଗହ ଅନେକାନି ସତସହସାନି ବିସଜତି ପୋର ଜାନପଦଂ । ସତମେ ଚ ଵସେ ଅସି-ଛତ-ଧଜ ରଧ-ରଖୀ-ତୁରଂଗ-ସତ-ଘଟାନି ସବତ ସଂଦଂସନଂ ସବମଂଗଂଲାନି କାରୟତି-ସତ ସହସେହି । ଅଂଠମେ ଚ ଵସେ ମହତ ସେନାୟ ମଧୁରଂ ଅନୁପତୋ ଗୋରଥଗିରିଂ

---

† କେଉଁଏ 'ଅରକତ—ପୁରଂ' ପାଠ କରନ୍ତି ।

* କେଉଁଏ 'ତନସୁଲିୟା ବାଟ' ପାଠ କରନ୍ତି ।

**ଅଷ୍ଟମ ଧାଡ଼ି**—ଘାତାପୟିତା ରାଜଗହାନଂ ପପୀଡ଼ାପୟତି । ଏତିନଂ ଚ କମଂ-ପଦାନ-ପନାଦେନ ସଂଭୀତ-ସେନ-ବାହନେ ବିପମୁଂଚିତୁଂ ମଧୁରଂ ଅପଯାତୋ ଯେବ ନବଦେ‌ା ସବଘରବାସିନଂ ଚ ସବ ଗହପତିନଂ ଚ ପାନ ଭୋଜନଂ ଦଦାତି । କଲିଂଗଂଯାତି । ପଲ୍ଲବଭାର—

**ନବମ ଧାଡ଼ି**—କପରୁଖ-ହୟ-ଗଜ-ନର-ରଧ ସହ ଯାତି । ସବ ଘରବାସିନଂ ଚ ସବ ରାଜ ଭତକାନଂ ଚ ସବ ଗହପତିକାନଂ ଚ ସବ ବଂହଣାନଂ ଚ ପାନ ଭୋଜନଂ ଦଦାତି । ଅରହତାନଂ ( ନିଗଂଥାନଂ ) ସମଣାନଂ ଚ······ଦଦାତି ସତସହ ସେହି । ନବମେ ଚ ବସେ—

**ଦଶମ ଧାଡ଼ି**—ବେଡ଼ୁରୟ-କଲିଂଗ-ରାଜନିବାସଂ ମହା-ବିଜୟ ପାସାଦଂ କାରୟତି ଅଠତିସାୟ ସତ ସହସେହି । ଦଶମେ ଚ ବସେ କଲିଂଗରାଜବଂସାନଂ ତତିୟ-ଯୁଗ-ସଗାବସାନେ କଲିଂଗପୁବ ରାଜାନଂ ଯସସଂକାରଂ କାରାପୟତି ସତସହ ସେହି । ଏକାଦଶମେ ଚ ବସେ···ମଣି-ରତନାନି ସହ ଯାତି ।

**ଏକାଦଶ ଧାଡ଼ି**—କଲିଂଗ ପୁବରାଜ-ନିବେସିତ ପିଥୁଦଗ-ଦଭ-ନଗଲନେ କାଡ଼ୟତି ଜୀନପଦ-ଭବନଂ ଚ ତେରସ-ବସ-ସତ-କତଂ ଭିଦାତି ତିମିର-ଦହ-ସଂଘାତଂ * । ବାରସମେ ଚ ବସେ × × × ସତ ସହ ସେହି ବିତାସୟତି ଉତରାପଧ ରାଜାନୋ ।

---

* ବରୁଅଙ୍କ ପାଠ ପରବର୍ତ୍ତିତ କରଅଛି । ତାଙ୍କର ପାଠ —'ନଗଲେ ନେକାସୟତି ଅନୁପଦ ଭବନଂ ;' କିନ୍ତୁ Cunningham, ଇନ୍ଦ୍ରଜୀ, ଜୟସ୍ୱାଲ, Princep ପ୍ରଭୃତି 'ଜନପଦଭବନଂ' ପାଠ କରିଛନ୍ତି । ଏହା ଅଧିକ ଗ୍ରାହ୍ୟ ।

**ଦ୍ୱାଦଶ ଧାଡ଼ି**—ମାଗଧାନଂ ଚ ବିପୁଲଂ ଭୟଂ ଜନୟନ୍ତୋ ହଥୀସଂ ଗଂଗାୟ ପାୟୟନ୍ତି । ମାଗଧାନଂ ଚ ରାଜାନଂ ବହସତିମିତଂ ପାଦେ ବଂଦାପୟନ୍ତି । ନଂଦ-ରାଜ-ନୀତଂ କାଲିଂଗ-ଜୀନାସନଂ ଅଂଗ ମଗଧତୋ କଳିଂଗ ଆନେତି ହୟ-ଗଜ-ସେନା-ବାହନ-ସତସେହି । ଅଂଗ-ମଗଧବାସିନଂ ଚ ପାଦେ ବଂଦାପୟତି ।

**ତ୍ରୟୋଦଶ ଧାଡ଼ି**—ବୀଥି-ଚତର-ପଳଧାନି-ଗୋପୁରାନି ସିହରାନି ନିବେସୟତି । ସତ-ବାସୁକୀ ରତନଂ ପେଷୟଂତି । ଅଭୁତଂ ଅଛରିୟଂ ହଥୀସ-ପସବଂ ପରିହରଂତି । ମିଗ-ହୟ-ହଥୀ ଉପନାମୟଂତି । ପଂଡ଼ରାଜା ବିବିଧାଭରଣାନି ମୁତା-ମଣି-ରତନାନି ଅହରାପୟତି ଇଧ ସତ ସହସାନି ।

**ଚତୁର୍ଦ୍ଦଶ ଧାଡ଼ି**—× × × ସିନୋ ବସୀକରୋତି । ତେରସମେ ଚ ବସେ ସୁପବତ-ବିଜୟ-ଚକେ କୁମାରୀ-ପବତେ ଅରହତୋ-ପରିନିବସତୋ ହି କାୟନିସୀଦୀୟାୟ ରାଜଭତକେହି, ରାଜଭତିହି, ରାଜପୁତେହି, ରଜମହିସହି ଖାରବେଳ ସିରିନା ।

**ପଞ୍ଚଦଶ ଧାଡ଼ି**—× × × ସତ-ଦଣ-ଲେଣ-ସତଂ କାରାପିତଂ । ସକତ-ସମଣ ସୁବିହିତାନଂ ଚ ସତ-ଦସାନଂ ଯତିନଂ ତାପସ-ଇସିନଂ ଲେଣଂ କାରୟତି । ଅରହତ-ନିସୀଦୀପ-ସମୀପେ ପଭାରେ ଚ ବରାକର-ସମୁଥାପିତାହି ଅନେକଯୋଜନାହିତାହି ପନତିସାହି-ସତ-ସହସାହି ସିଳାହି ସିଳଥଂଭାନି ଚ ଚେତିୟାନି ଚ କାରାପୟତି

**ଷୋଡ଼ଶ ଧାଡ଼ି**—ପଟଳିକ-ଚତରେ ଚ ବେଡରିୟ-ଗଭେ ଥଂଭେ ପତିଠାପୟତି ପନତରିୟ-ସତ-ସହସେହି । ବେଡ଼ରିୟ-

ଷାଳ-ବୋଛିଂ ନଂ ଚେଚ-ଯଠି-ଅଧସତିକଂ ତିରୟୁଂ ଉପାଦୟତି ।



ବୃକ୍ଷ ଚୈତ୍ୟ ସଙ୍କେତ

ଖେମ ରାଜାସ ବଧ-ରାଜାସ, ଇଂଦରାଜାସ, ଧଂମରାଜା, ପସଂତୋ ସୁନଂତୋ ଅନୁଭବଂତୋ କଲଣାନ ।

**ସପ୍ତଦଶ ଧାଡ଼ି**—ଗୁଣ-ବିସେସ-କୁଶଲ ସବ-ପାସଂଡ-ପୂଜକୋ ସବ-ଦେବାୟତନ-ସଂକାର--କାରକୋ ଅପତିହତଚକ-ବାହନ-ବଲୋ ଚକ-ଧରୋ ଗୁତଚକୋ ପବତ-ଚକୋ ରାଜସି-ବଂସ-କୁଲ-ବିନିସିତୋ ମହା-ବିଜୟୋ ରାଜା ଖାରବେଳ ସିରି ।

## —ସଂସ୍କୃତାନୁବାଦ—

ନମୋଽର୍ହଦ୍ଭ୍ୟଃ । ନମଃ ସର୍ବସିଦ୍ଧେଭ୍ୟଃ । ଐରେଣ ମହାରାଜେନ ମହାମେଘବାହନେନ ଚେତ-ରାଜବଂଶ-ବର୍ଦ୍ଧନେନ ପ୍ରଶସ୍ତ-ଶୁଭ-ଲକ୍ଷଣେନ ଚତୁରନ୍ତ-ରକ୍ଷଣ-ଗୁଣୋପେତେନ କଳିଙ୍ଗା-ଧିପତିନା ଶ୍ରୀ ଖାରବେଳେନ ପଞ୍ଚଦଶବର୍ଷାଣି ଶ୍ରୀ କଡ଼ାର-ଶରୀର-ବତା କ୍ରୀଡ଼ିତାଃ କୁମାରକ୍ରୀଡ଼ାଃ । ତତୋ ଲେଖ-ରୂପ-ଗଣନା-ବ୍ୟବହାର-ବିଧି-ବିଶାରଦେନ ସର୍ବ-ବିଦ୍ୟା ବଦାତେନ ନବବର୍ଷାଣି ଯୌବରାଜ୍ୟମେବ ଶାସିତମ୍ । ସମ୍ପୂର୍ଣ୍ଣ-ଚତୁର୍ବିଂଶତିବର୍ଷଃ

ସ ଇଦାନୀଂ ବର୍ଦ୍ଧମାନ-ଶେଷ-ଯୌବନାଭି ବିଜୟସ୍ତୃତୀୟେ କଳିଙ୍ଗ-ରାଜବଂଶେ ପୁରୁଷ-ଯୁଗେ ମହାରାଜାଭିଷେଚନଂ ପ୍ରାପ୍ନୋତି । ଅଭିଷିକ୍ତ ମାତ୍ରଶ୍ଚ ପ୍ରଥମେ ବର୍ଷେ ବାତ-ବିହତ-ଗୋପୁର-ପ୍ରାକାର ନିବେଶନଂ ପ୍ରତିସଂସ୍କାରୟତି କଳିଙ୍ଗନଗରେ, ଗମ୍ଭୀର-ଶୀତଳ ତଡ଼ାଗ-ପାଳୀଶ୍ଚ ବନ୍ଧୟତି, ସର୍ବୋଦ୍ୟାନ ପ୍ରତି ସଂସ୍ଥାପନଞ୍ଚ କାରୟତି ପଞ୍ଚତ୍ରିଂଶ ଶତ ସହସ୍ରୈଃ । ପ୍ରକୃତୀଶ୍ଚ ରଞ୍ଜୟତି ।

ଦ୍ୱିତୀୟେ ପୁନଃ ବର୍ଷେ ଅଚିନ୍ତୟିତ୍ୱା ଶାତକର୍ଣ୍ଣିଂ ପଶ୍ଚିମାଂ ଦିଶଂ ହୟ-ଗଜ-ନର-ରଥ-ବହୁଳଂ ଦଣ୍ଡଂ ପ୍ରସ୍ଥାପୟତି । କଳିଙ୍ଗାଗତୟା ଚ ସେନୟା ବିତ୍ରାସୟତି ଅଶ୍ମକ-ନଗରଂ (ଋଷିକନଗରମିତିବା) । ତୃତୀୟେ ପୁନର୍ବର୍ଷେ ଗନ୍ଧର୍ବ-ବେଦବୁଧଃ ଦର୍ପ-ଗୀତ-ନୃତ୍ୟ-ବାଦନ-ସନ୍ଦର୍ଶନୈଃ ଉତ୍ସବ-ସମାଜ-କାରଣାଭିଶ୍ଚ କ୍ରୀଡ଼ୟତି ନଗରୀଂ ।

ତଥା ଚତୁର୍ଥେ ବର୍ଷେ ବିଦ୍ୟାଧରାଧିବାସଂ ଅହତପୂର୍ବଂ କଳିଙ୍ଗ ପୂର୍ବରାଜାନାଂ ଧର୍ମେଣ ବୈନୀତ୍ୟା ପ୍ରଶାସୟତି ସର୍ବତ୍ର ଧର୍ମକୂଟେନ । ଭୀତବସ୍ତ୍ରାନ୍ ନିକ୍ଷିପ୍ତ-ଛତ୍ର-ଭୃଙ୍ଗାରାନ୍ ହୃତରତ୍ନ-ସ୍ୱାପତେୟାନ୍ ସର୍ବରାଷ୍ଟ୍ରିକଭୋଜକାନ୍ ପାଦୌ ବନ୍ଦୟତି ।

ପଞ୍ଚମେ ଚଦାନୀଂ ବର୍ଷେ ନନ୍ଦରାଜେନ ତ୍ରିବର୍ଷ-ଶତାଭି ପୂର୍ବମୁଦ୍ଘାଟିତଂ ତନସୁଲୀୟବର୍ତ୍ମନଃ ପ୍ରଣାଳୀଂ ନଗରଂ ପ୍ରବେଶୟତି । ଶତ ସହସ୍ରୈଶ୍ଚ ଖାନୟତି ।

ଅଭିଷିକ୍ତଶ୍ଚ ଷଷ୍ଠେ ବର୍ଷେ ରାଜଶ୍ରିୟଂ ସନ୍ଦର୍ଶୟନ୍ ସର୍ବକର-ପଣାଦ୍ୟନେକାନୁଗ୍ରହାନ୍ ଶତ-ସହସ୍ର-ସଂଖ୍ୟକାନ୍ ବିସୃଜତି ପୌରଜାନପଦେ ।

ସପ୍ତମେ ଚ ବର୍ଷେ ଅସିଛନଧ୍ୱଜରଥ-ରକ୍ଷିତୁରଙ୍ଗଶତ ଘଣ୍ଟାନାଂ ସର୍ବାଣ ସନ୍ଦର୍ଶନଂ ସର୍ବମଙ୍ଗଳାନି ଚ କାରୟତି ଶତ ସହସ୍ରୈଃ । ଅଷ୍ଟମେ ଚ ବର୍ଷେ ମହତ୍ୟା ସେନୟା ମଥୁରା ମନୁ ପ୍ରାପ୍ତଃ ଗୋରଥଗିରିଂ ଘାତୟିତ୍ୱା ରାଜଗୃହକାନ୍ ପ୍ରପୀଡ଼ୟତି । ଏତେଷାଞ୍ଚ କର୍ମପ୍ରଦାନ-ପ୍ରଣାଦେନ ସମ୍ଭୀତାନ୍ ସେନାବାହନାନ୍ ବିପ୍ରମୋକ୍ତୁଂ ମଥୁରା ମପଯାତ ଏବ ନରେନ୍ଦ୍ରଃ ସର୍ବଗୃହବାସିଭ୍ୟଶ୍ଚ ସର୍ବ ଗୃହପତିଭ୍ୟଶ୍ଚ × × × × ପାନଭୋଜନଂ ଦଦାତି । କଳିଙ୍ଗ ଯାତି । ପଲ୍ଲବ ଭାର-କଳ୍ପ-ବୃକ୍ଷ-ହୟ-ଗଜ-ନର-ରଥୈଃ ସହଯାତି । ସର୍ବଗୃହବାସିଭ୍ୟଶ୍ଚ ସର୍ବରାଜଭୃତ୍ୟକେଭ୍ୟଶ୍ଚ ସର୍ବଗୃହପତିଭ୍ୟଶ୍ଚ ସର୍ବ-ବ୍ରାହ୍ମଣେଭ୍ୟଶ୍ଚ ପାନ ଭୋଜନଂ ଦଦାତି । ଅର୍ହତେଭ୍ୟଃ ଶ୍ରମଣେ-ଭ୍ୟଶ୍ଚ × × × × ଦଦାତି × × × × ଶତସହସ୍ରୈଃ

ନବମେ ଚ ବର୍ଷେ ବୈଦୁର୍ଯ୍ୟଂ କଳିଙ୍ଗ-ରାଜ-ନିବାସଂ ମହାବିଜୟ-ପ୍ରାସାଦଂ କାରୟତି ଅଷ୍ଟାତ୍ରିଂଶ-ଶତସହସ୍ରୈଃ ।

ଦଶମେ ଚ ବର୍ଷେ କଳିଙ୍ଗ-ରାଜବଂଶାନାଂ ତୃତୀୟ ଯୁଗ-ସର୍ଗାବସାନେ କଳିଙ୍ଗପୂର୍ବରାଜାନାଂ ଯଶଃସତ୍କାରଂ କାରୟତି ଶତସହସ୍ରୈଃ ।

ଏକାଦଶେ ଚ ବର୍ଷେ × × ମଣି ରତ୍ନୈଃ ସହଯାତି । × × × କଳିଙ୍ଗ-ପୂର୍ବ-ରାଜନିବେଶିତଂ ପୃଥୁଦକଦର୍ଭ ନଗରେ ନିଷ୍କାସୟତି ଜାନପଦଭାବନଞ୍ଚ ତ୍ରୟୋଦଶ-ବର୍ଷ-ଶତ-କୃତଂ ଭିନତ୍ତି ତିମିର-ହ୍ରଦ-ସଂଖ୍ୟାତଂ ।

ଦ୍ୱାଦଶେ ଚ ବର୍ଷେ ଶତସହସ୍ରୈଃ ବିତାସୟତି ଉତ୍ତରାପଥ ରାଜାନ୍ × × × । ମାଗଧାନାଂ ଚ ବିପୁଲଂ ଭୟଂ ଜନୟତୋ ହସ୍ତ୍ୟଶ୍ୱଂ ଗଙ୍ଗାୟାଂ ପାୟୟତି । ମାଗଧାନାଞ୍ଚ ରାଜାନଂ ବୃହସ୍ପତି ମିତ୍ରଂ ପାଦୌ ବନ୍ଦୟତି । ନନ୍ଦ-ରାଜନୀତଂ କାଳିଙ୍ଗ ଜୀନାସନଂ ଅଙ୍ଗମଗଧେଭ୍ୟଃ କଳିଙ୍ଗଂ ମାନୟତି ହସ୍ତି-ଗଜ-ସେନାବାହନ-ସହସ୍ରୈଃ । ଅଙ୍ଗମଗଧ-ବାସିନଃ ପାଦୌ ବନ୍ଦୟତି । × × × ବୀଥି-ଚତ୍ୱର-ପଳିଘାନ୍ ଗୋପୁରାଣି ଶିଖରାଣି ନିବେଶୟତି । ଶତଂ ବାସୁକଯ୍ୟୋ ଧନଂ ପ୍ରେଷୟନ୍ତି । ଅଦ୍ଭୁତାନାଶ୍ଚର୍ଯ୍ୟାନ୍ ହସ୍ତ୍ୟଶ୍ୱପଶୂନ୍ ପରିହାରୟନ୍ତି । ମୃଗ-ହସ୍ତି-ହସ୍ତିନଃ ଉପନାମୟନ୍ତି । ପାଣ୍ଡ୍ୟ-ରାଜା ବିବିଧାଭରଣାନି ମୁକ୍ତା-ମଣି-ରତ୍ନାନି ଅହାରୟନ୍ତି ଇହ ଶତସହସ୍ର ସଂଖ୍ୟକାନି । × × × ସିନଃ ବଶୀକାରୟତି ।

ତ୍ରୟୋଦଶେ ଚ ବର୍ଷେ ସୁପ୍ରବୃତ୍ତ-ବିଜୟ-ଚକ୍ରେ କୁମାରୀ ପର୍ବତେ ଅର୍ହତଃ ପରିନିବସତୋ ହି କାୟ-ନିଷୀଦ୍ୟାଂ ରାଜଭୃତୈଃ ରାଜଭ୍ରାତୃଭିଃ । ରାଜପୁତ୍ରୈଃ ରାଜମହିଷୀଭିଃ ଖାରବେଳେନ ଶ୍ରୀମତା ସପ୍ତଦଶ ନ୍ୟୂନଶତଂ କାରିତମ୍ ।

ସତ୍କୃତ-ଶ୍ରମଣେଭ୍ୟଃ ସୁବିହିତେଭ୍ୟଶ୍ଚ ଶତସ୍ୟ ଦିଶାଂ-ଯତିଭ୍ୟଃ ତାପସର୍ଷିଭ୍ୟଃ ଲୟନଂ କାରୟତି । ଅର୍ହନ୍ନିଷୀଦ୍ୟାଃ ସମୀପେ ପ୍ରାଗ୍ଭାରେ ବରାକର-ସମୁତ୍ଥାପିତାଭିରନେକଯୋଜନା ହୃତାଭିଃ ପଞ୍ଚତ୍ରିଂଶଚ୍ଛତସହସ୍ରାଭିଃ ଶିଳାଭିଃ ଶିଳାସ୍ତମ୍ଭାନ୍ ଚ ଚୈତ୍ୟାନି କାରୟତି । ପାଟଳିକଚତ୍ୱରେ ଚ ବୈଡୂର୍ଯ୍ୟଗର୍ଭେ ସ୍ତମ୍ଭାନ୍ ପ୍ରତିଷ୍ଠାପୟତି ପଞ୍ଚସପ୍ତତିଶତସହସ୍ରୈଃ । ବୈଡୂର୍ଯ୍ୟ-ନୀଳ-ବ୍ୟବଚ୍ଛିନ୍ନଂ ଚୈତ୍ୟଯଷ୍ଟ୍ୟର୍ଦ୍ଧଶତକଂ ତୁର୍ଯ୍ୟକ୍ ଉତ୍ପାଦୟତି ।

କ୍ଷେମରାଜଃ ସଃ । ବର୍ଦ୍ଧରାଜଃସଃ । ଇନ୍ଦ୍ରରାଜଃସଃ । ଧର୍ମରାଜଃ ପଶ୍ୟନ୍ ଶୃଣ୍ୱନ୍ନନୁଭବନ୍ କଲ୍ୟାଣାନି । ଗୁଣବିଶେଷ-କୁଶଳଃ, ସର୍ବପାଷଣ୍ଡ-ପୂଜକଃ, ସର୍ବ-ଦେବାୟତନ-ସଂସ୍କାରକାରକଃ, ଅପ୍ରତିହତ-ଚକ୍ର-ବାହନବଳଃ, ଚକ୍ରଧରଃ, ଗୁପ୍ତଚକ୍ରଃ, ପ୍ରବର୍ତ୍ତିଚକ୍ରଃ, ରାଜର୍ଷିବଂଶକୁଳ ବିନିସୃତୋ, ମହାବିଜୟୋ, ରାଜା ଖାରବେଳ ଶ୍ରୀଃ * ।

## —ଓଡ଼ିଆ ଅନୁବାଦ—

୧—ଅର୍ହତମାନଙ୍କୁ ନମସ୍କାର (୧) ସକଳ ସିଦ୍ଧମାନଙ୍କୁ ନମସ୍କାର । ଆର୍ଯ୍ୟ (୨) ମହାରାଜ, ମହାମେଘବାହନ (୩) 'ଚେତ' ରାଜବଂଶ ବର୍ଦ୍ଧନ (୪) ପ୍ରଶସ୍ତ ଶୁଭ ଲକ୍ଷଣ (୫) ଅସମୁଦ୍ରକ୍ଷିତିର ଶାସକ ହେବା ପାଇଁ (୬) ସକଳ ଗୁଣରେ ଭୂଷିତ, ଲକ୍ଷ୍ମୀଧରଙ୍କ ପରି ରୂପସମ୍ପନ୍ନ, କଳିଙ୍ଗର ରାଜା ଶ୍ରୀ ଖାରବେଳ ୧୫ବର୍ଷ ପର୍ଯ୍ୟନ୍ତ କୁମାର ରୂପେ କ୍ରୀଡ଼ା କୌତୁକରେ କଟାଇଥିଲେ । ତାହା ପରେ ଲେଖ (ଲିଖନ), ରୂପ (ମୁଦ୍ରାତତ୍ତ୍ୱ), ଗଣନା (ଆୟବ୍ୟୟ ସମୀକ୍ଷଣ), ବ୍ୟବହାର (ମକଦ୍ଦମା ବିଚାର), ବିଧି (ରାଜ୍ୟ ଶାସନର ନିୟମ-ମାନ) ପ୍ରଭୃତି ସର୍ବବିଦ୍ୟାରେ ନିପୁଣ ହୋଇ ନଅବର୍ଷକାଳ ଯୁବରାଜରୂପେ ଶାସନ କରିଥିଲେ । ଚତୁର୍ବିଂଶତି ବର୍ଷ ଉପଗତ ହୁଅନ୍ତେ, ସେ କଳିଙ୍ଗ ରାଜବଂଶର 'ତୃତୀୟ ପୁରୁଷ ଯୁଗ'

---

* ବରୁଆଙ୍କ ପାଠ ଓ ତାହାର ସଂସ୍କୃତାନୁବାଦ ବିଶେଷ ବିଶ୍ୱାସଯୋଗ୍ୟ ହୋଇ ଏଥିରେ ଗ୍ରହଣ କରାଯାଇଛି ।

(୧) ଅର୍ହତମାନଙ୍କ ନମସ୍କାର କରିବାହାଇଥିବାରୁ ସେ ଜୈନ ଥିବାର ସ୍ପଷ୍ଟ ଜଣାଯାଏ । ବୌଦ୍ଧମାନଙ୍କର ନମସ୍କ୍ରିୟା ଏହାଠାରୁ ପୃଥକ୍ । (୨) ଆର୍ଯ୍ୟଶବ୍ଦ ମାନ୍ୟାର୍ଥରେ ବ୍ୟବହୃତ ହୋଇଛି । ଏହା ଆର୍ଯ୍ୟଜାତି ବୁଝାଉନାହିଁ ।

(ପଞ୍ଚମ ପୁରୁଷ) (୮) ମହାରାଜରୂପେ ଅଭିଷିକ୍ତ ହୋଇଥିଲେ ଓ ଜୀବନର ଅବଶିଷ୍ଟାଂଶ ଦିଗ୍‌ବିଜୟ ଓ ଶାସନ କାର୍ଯ୍ୟରେ କଟାଇଥିଲେ ।

୨ । ଅଭିଷିକ୍ତ ହେବା ମାତ୍ରେ ସେ ରାଜତ୍ୱର ପ୍ରଥମବର୍ଷରେ (କଳିଙ୍ଗର ରାଜଧାନୀ) କଳିଙ୍ଗ ନଗରର ପ୍ରବଳ ବାୟୁପ୍ରବାହଦ୍ୱାରା ନଷ୍ଟ ହୋଇଥିବା ଗୋପୁର (୯) ପ୍ରାକାର ଓ ନିବେଶନ (ପ୍ରାସାଦ) ମାନଙ୍କର ସଂସ୍କାର କରିଥିଲେ । ଗଭୀର ଓ ଶୀତଳ ପୋଖରୀ ଓ ପ୍ରଣାଳୀମାନଙ୍କୁ ବନ୍ଧାଇଥିଲେ । ଉଦ୍ୟାନ ସକଳର ପୁନଃ ନିର୍ମାଣ କରିଥିଲେ । ଏଥିରେ ପଞ୍ଚତ୍ରିଂଶଲ୍ଲକ୍ଷ ମୁଦ୍ରା ବ୍ୟୟିତ ହୋଇଥିଲା । ସେ ପ୍ରଜାମାନଙ୍କୁ ରଞ୍ଜନ କରିଥିଲେ ବା ନାନାପ୍ରକାର ସୁଖ ଦେଇଥିଲେ ।

୩ । ରାଜତ୍ୱର ଦ୍ୱିତୀୟ ବର୍ଷରେ ହୟଗଜନରରଥଯୁକ୍ତ ଚତୁରଙ୍ଗବଳ (ଦଣ୍ଡ) ପଶ୍ଚିମଦିଗକୁ ଚଳାଇ ଅତର୍କିତ ଭାବରେ ସାତକର୍ଣ୍ଣିଙ୍କୁ (ଅନ୍ଧ୍ର ରାଜା) ଆକ୍ରମଣ କରିଥିଲେ । କଳିଙ୍ଗରୁ ଯିବା ଅସିଥିବା ସେନାଦ୍ୱାରା ଅସିକ ବା ଅସ୍ମକ (୧୦) ନଗର ଆକ୍ରମଣ କରିଥିଲେ ।

---

ଅନ୍ଧ୍ରସାତବାହନ ବଂଶର ଲେଖରେ ମଧ୍ୟ ଅର୍ଯ୍ୟ ଶବ୍ଦ ଦେଖାଯାଏ । (୩) 'ମହାମେଘ' ବିଶାଳ ମେଘପରି ହସ୍ତୀ ଯାହାଙ୍କର ବାହନ, ଐରାବତ ବାହନ ଇନ୍ଦ୍ରତୁଲ୍ୟ ପରାକ୍ରମଶାଳୀ । (୪) ଖାରବେଳ ଚେତ ବା ଚେଦୀ ରାଜବଂଶରୁ ଉଦ୍ଭୂତ । (୫)ତାଙ୍କଠାରେ ଶଙ୍ଖ, ଚକ୍ର, ଧ୍ୱଜ, ମତ୍ସ୍ୟ ଇତ୍ୟାଦି ଚକ୍ରବର୍ତ୍ତୀ ଲକ୍ଷଣମାନ ବିଦ୍ୟମାନ ଥିଲା । (୬) ଚତୁରନ୍ତ-ମଧ୍ୟ—ସମୁଦ୍ର-କ୍ଷିତି । (୭) ଶ୍ରୀକଡ଼ାର—ଲକ୍ଷ୍ମୀଧର (୮) 'ତୃତୀୟ ପୁରୁଷ ଯୁଗ'—ପୁରୁଷ ଯୁଗର ଅର୍ଥ 'ବୈରାଜ୍ୟ' ବୋଲି ଗ୍ରହଣ କରି ଖାରବେଳଙ୍କୁ ଚେତ ବଂଶର ୫ମ ପୁରୁଷ ବୋଲି ବରୁଆ ସ୍ଥିର କରିଛନ୍ତି । (୯) ଦାକ୍ଷିଣାତ୍ୟରେ ପରିଦୃଷ୍ଟ ପ୍ରାସାଦ ବିଶେଷର ବିଶାଳ ତୋରଣ (୧୦) ଅସିକ

୪ । ରାଜତ୍ୱର ତୃତୀୟ ବର୍ଷରେ (୧୧) ଗନ୍ଧର୍ବ ବେଦରେ ବିଶାରଦ (ଖାରବେଳ) ଦପ (ପଣ୍ୟୁଦ୍ଧ), ନୃତ୍ୟ, ଗୀତ, ବାଦନ (ବାଇଦ) ଇତ୍ୟାଦି ଦେଖାଇ ଉତ୍ସବ ଓ ସମାଜ ପ୍ରଭୃତି କରି କଳିଙ୍ଗ ନଗରର ଲୋକମାନଙ୍କ ଆନନ୍ଦ ବିଧାନ କରିଥିଲେ ।

୫ । ରାଜତ୍ୱର ଚତୁର୍ଥ ବର୍ଷରେ ବିଦ୍ୟାଧର (୧୨) ବାସସ୍ଥାନ ଅବିରତପୁରକୁ କଳିଙ୍ଗର ପୂର୍ବ ରାଜାମାନଙ୍କର ଧର୍ମ, ନୀତି ଓ ଧର୍ମକୂଟ ଦ୍ୱାରା ଶାସନ କରିଥିଲେ । ଯୁଦ୍ଧରେ ଧ୍ୱସ୍ତ ବିଧ୍ୱସ୍ତ ହୋଇଥିବା (ପରାସ୍ତ ହୋଇଥିବା) ରାଷ୍ଟ୍ରିକ ଓ ଭୋଜକମାନଙ୍କ (୧୩) ଛତ୍ର ଓ ଭୃଙ୍ଗାର (ଜଳପାତ୍ର) ସମୂହ ନିକ୍ଷିପ୍ତ ହୋଇଥିଲା ଓ ସେମାନଙ୍କର ସମସ୍ତ ଧନରତ୍ନ ଅପହୃତ ହୋଇଥିଲା । ସେମାନେ ଖାରବେଳଙ୍କ ପାଦବନ୍ଦନା କରିଥିଲେ ।

୬ । ରାଜତ୍ୱର ପଞ୍ଚମ ବର୍ଷରେ 'ନନ୍ଦରାଜ'ଙ୍କ ଦ୍ୱାରା ୩୦୦ ବର୍ଷ ବା ୧୦୩ ବର୍ଷ ପୂର୍ବେ ଖୋଦିତ ହୋଇଥିବା ପ୍ରଣାଳୀକୁ ତନସୁଲି (୧୪) ବାଟରେ ନଗର ଭିତରକୁ ଆଣିଥିଲେ । ଏଥିରେ ଏକଲକ୍ଷ ମୁଦ୍ରା ବ୍ୟୟିତ ହୋଇଥିଲା ।

୭ । ରାଜତ୍ୱର ଷଷ୍ଠ ବର୍ଷରେ ନିଜର ବିପୁଳ ଐଶ୍ୱର୍ଯ୍ୟ ଦେଖାଇବା ପାଇଁ କର (ଖଜଣା), ପଣ (ମାହାସୁଲ) ପ୍ରଭୃତି

---

ବା ଅସୁକ ନାମକ ଗୋଟିଏ ପ୍ରାଚୀନ ରାଜ୍ୟ । ମହାରାଷ୍ଟ୍ର ପ୍ରଦେଶରେ ଅବସ୍ଥିତ ଥିଲା । ୧୧—ଗନ୍ଧର୍ବ ବେଦ-'ସଙ୍ଗୀତ ବିଜ୍ଞାନ'-ଗନ୍ଧର୍ବ ବେଦ ୪ଟି ଉପବେଦ ମଧ୍ୟରୁ ଏକତମ (୧୨)—'ବିଦ୍ୟାଧର' ଜାତି ବିଶେଷ । (୧୩) ଅଶୋକଙ୍କ ବହୁକାଳ ପୂର୍ବରୁ ମହାରାଷ୍ଟ୍ର ପ୍ରଦେଶର ପଶ୍ଚିମଖଣ୍ଡରେ ଆଦ୍ରୀନଙ୍କ ଉପତ୍ୟକାରେ ରାଷ୍ଟ୍ରିକ ଓ ଭୋଜକ ନାମକ ଦୁଇଟି ଜାତି ବାସ କରୁଥିଲେ ।

ରାଜସ୍ୱ ଛାଡ଼ି ଦେଇଥିଲେ ଏବଂ ନଗର ଓ ଗ୍ରାମର ଲୋକମାନଙ୍କୁ ନାନାପ୍ରକାର ଅନୁଗ୍ରହ ଦେଖାଇଥିଲେ ।

୮ । ସପ୍ତମ ବର୍ଷରେ ସହସ୍ର ସହସ୍ର ମୁଦ୍ରା ବ୍ୟୟ କରି ଅସି, ଛତ୍ର, ଧ୍ୱଜ, ରଥ, ରକ୍ଷୀ, ତୁରଙ୍ଗ, ଘଟ ପ୍ରଭୃତି ସନ୍ଦର୍ଶନ ଦ୍ୱାରା ସମାଜ ଓ ମଙ୍ଗଳ ବା ବିଜୟ ଉତ୍ସବ ଇତ୍ୟାଦି କରିଥିଲେ ।

୯ । ଅଷ୍ଟମ ବର୍ଷରେ ବିପୁଳ ବାହିନୀ ସଙ୍ଗରେ ନେଇ ମଥୁରା ଯାଇଥିଲେ । ସେଠାରୁ ଯୁଦ୍ଧଯାତ୍ରା କରି ଗୋରଥଗିରିର ରାଜାଙ୍କୁ ପରାସ୍ତ କରି ମଗଧର ରାଜଧାନୀ ରାଜଗୃହକୁ ଅବରୋଧ କରିଥିଲେ । ଶତ୍ରୁ ସୈନ୍ୟମାନଙ୍କର ପ୍ରତିରୋଧଜନିତ କ୍ଳାନ୍ତି ଓ ଅବସାଦ ଦୂର କରିବା ପାଇଁ ସେ ନିଜ ସୈନ୍ୟମାନଙ୍କୁ ପୁଣି ମଥୁରା ନେଇ ଯାଇଥିଲେ । ସେଠାରେ ଉପଗତ ହୋଇ ସେ ( ଖାରବେଳ ) ସମସ୍ତ ଗୃହବାସୀ, ଗୃହପତି, ବ୍ରାହ୍ମଣ, ଶ୍ରମଣମାନଙ୍କୁ ପାନ ଭୋଜନ ଦ୍ୱାରା ସନ୍ତୁଷ୍ଟ କରିଥିଲେ । ହସ୍ତୀ, ଗଜ, ନର, ରଥ ବେଷ୍ଟିତ ପଲ୍ଲବଭାର କଳ୍ପବୃକ୍ଷ ( ୧୫ ) ସହିତ ସେ କଳିଙ୍ଗକୁ ଫେରି ଆସିଥିଲେ । ( ପଲ୍ଲବଭାର କଳ୍ପବୃକ୍ଷଦ୍ୱାରା ତାଙ୍କର ବିଜୟ ସୂଚିତ ହୁଏ ) ।

ଏଠାରେ ପହଞ୍ଚି ସେ ଶତସହସ୍ର ମୁଦ୍ରାବ୍ୟୟ କରି ଗୃହବାସୀ,

୧୪—ଅଧିକାଂଶ ଏହାକୁ ତନଶୂଳୀ ବୋଲି ପଢ଼ିଛନ୍ତି । ଏହା ତଉଶୂଳୀ ବୋଲି କେହି କେହି ସନ୍ଦେହ କରନ୍ତି ଏବଂ ଏହାହିଁ ହେବା ସମ୍ଭବପର ।

୧୫—କଳ୍ପବୃକ୍ଷ—ବୌଦ୍ଧମାନଙ୍କର ବୋଧିଦ୍ରୁମ ପରି ଜୈନମାନଙ୍କର କଳ୍ପବୃକ୍ଷ ଆରାଧ୍ୟ ବସ୍ତୁ ଥିବାର କେତେକ ଜୈନଗ୍ରନ୍ଥରୁ ଜଣାଯାଏ ।

ରାଜଭୃତ୍ୟ, ଗୃହପତି, ବ୍ରାହ୍ମଣ, ଅର୍ହତ ଓ ଶ୍ରମଣମାନଙ୍କୁ ପାନ ଭୋଜନରେ ସନ୍ତୁଷ୍ଟ କରିଥିଲେ ।

୧୦ । ନବମ ବର୍ଷରେ ଅଷ୍ଟତ୍ରିଂଶ ଲକ୍ଷ ମୁଦ୍ରା ବ୍ୟୟ କରି ସେ ବୈଦୁର୍ଯ୍ୟଖଚିତ 'ମହାବିଜୟ ପ୍ରାସାଦ' (୧୬) ନାମକ କଳିଙ୍ଗ ରାଜନିବାସ ନିର୍ମାଣ କରିଥିଲେ ।

୧୧ । ଦଶମ ବର୍ଷରେ କଳିଙ୍ଗ ରାଜବଂଶର 'ତୃତୀୟ ଯୁଗ ସର୍ଗ'ର ଅବସାନ ହୁଅନ୍ତେ ସେ ବହୁସଂଖ୍ୟକ ମୁଦ୍ରା ବ୍ୟୟ କରି କଳିଙ୍ଗର ପୂର୍ବରାଜାମାନଙ୍କର ଯଶ ସଂସ୍କାର କରିଥିଲେ ।

୧୨ । ଏକାଦଶ ବର୍ଷରେ ମଣିରତ୍ନ ବିମଣ୍ଡିତ ସହିତ ପଣ୍ଡୁଆରରେ ବହିର୍ଗତ ହୋଇଥିଲେ । କଳିଙ୍ଗର ପୂର୍ବ ରାଜାମାନଙ୍କଦ୍ୱାରା ସ୍ଥାପିତ ବହୁ ଉଦକ ଓ କୁଶପୂର୍ଣ୍ଣ ନଗରକୁ ପରିଷ୍କାର କରି 'ଜାନପଦ ଭବନ' (୧୭) ବାହାର କରିଥିଲେ । ଏକଶତ ତେର ବର୍ଷକାଳ ପରିତ୍ୟକ୍ତ ହୋଇ ଥିବାରୁ ସେଠାରେ ଅନେକ ଦହ ସୃଷ୍ଟି ହୋଇଥିଲା । ସେଗୁଡ଼ିକ ମଧ୍ୟ ପରିଷ୍କାର କରାଇଥିଲେ ।

୧୩ । ଦ୍ୱାଦଶ ବର୍ଷରେ ଅସଂଖ୍ୟ ମୁଦ୍ରା ବ୍ୟୟ (କୌଣସି ଗୋଟିଏ ଅନୁଷ୍ଠାନରେ) କରିଥିଲେ । ଉତ୍ତରାପଥ

---

୧୬—'ମହାବିଜୟ ପ୍ରାସାଦ'—ଏହା ପ୍ରାଚୀନ କାଳରେ ହିଁ ଥିଲା ବୋଲି କେହି କେହି ମତ ପ୍ରକାଶ କରନ୍ତି । କିନ୍ତୁ ଖାରବେଳଙ୍କ ରାଜଧାନୀର ଅବସ୍ଥିତି ସ୍ଥିରରୂପେ ନିର୍ଣ୍ଣୀତ ନ ହେବା ପର୍ଯ୍ୟନ୍ତ ଏ ବିଷୟରେ ମତ ଦେବା ସମୀଚୀନ ନୁହେଁ ।

୧୭—'ଜାନପଦ ଭବନ' ବହୁ ଉଦକ ଓ କୁଶପୂର୍ଣ୍ଣ ନଗର ମଧ୍ୟରୁ ବାହାର କରିବା ବିଷୟରେ ମୁଁ ଗୋଟିଏ ପ୍ରବନ୍ଧ 'ଉତ୍କଳପ୍ରଦୀପ' ନାମକ ମାସିକ ପତ୍ରିକାରେ ପ୍ରକାଶ କରିଥିଲି । ଖାରବେଳ କମ୍ବଦଳୀରେ ଇନ୍ଦ୍ରଦ୍ୟୁମ୍ନ ଓ 'ଜାନପଦ' ଜଗନ୍ନାଥ ମନ୍ଦିରରୂପେ ବର୍ଣ୍ଣିତ ହୋଇଥିବାର ମତେ ଜଣାଏ ।

ରାଜାମାନଙ୍କର ଭୟ ଉତ୍ପାଦନ କରିଥିଲେ । ମଗଧବାସୀଙ୍କ ମଧ୍ୟରେ ବିପୁଳ ଭୟ ଜାତ କରାଇ ହସ୍ତୀ ଓ ଅଶ୍ୱମାନଙ୍କୁ ଗଙ୍ଗାର ଜଳ ପିଆଇ ଥିଲେ ଅର୍ଥାତ୍ ମଗଧ ଆକ୍ରମଣ କରି ସୈନ୍ୟମାନଙ୍କୁ ଗଙ୍ଗାକୂଳରେ ରଖାଇ ଥିଲେ । ମଗଧରାଜ ବୃହସ୍ପତିଙ୍କୁ ପରାସ୍ତ କରିଥିଲେ । ବହୁବର୍ଷ ପୂର୍ବେ କଳିଙ୍ଗରୁ ନନ୍ଦରାଜଙ୍କଦ୍ୱାରା ନୀତ କଳିଙ୍ଗ ଜିନାସନକୁ ଅଙ୍ଗ ମଗଧଦେଶରୁ ବିଜୟର ସ୍ମାରକସ୍ୱରୂପ ଅସଂଖ୍ୟ ଅଶ୍ୱ ଗଜ ରଥ ସେନାବାହିନୀଙ୍କ ପହଞ୍ଚରା ମଧ୍ୟରେ କଳିଙ୍ଗକୁ ଘେନି ଆସିଥିଲେ । ଅଙ୍ଗ ଓ ମଗଧର ଲୋକମାନଙ୍କୁ ପଦ ଦଳିତ କରିଥିଲେ । ରାଜ୍ୟରେ ରାସ୍ତା, ଚତ୍ୱର, ପରିଖା, ଗୋପୁର, ଶିଖର ବା ମନ୍ଦିର ପ୍ରଭୃତି ନିର୍ମାଣ କରିଥିଲେ । ଶତ ବାସୁକି (୧୮) ତାଙ୍କ ନିକଟକୁ ମଣି ମୁକ୍ତାଦି ମୂଲ୍ୟବାନ୍ ରତ୍ନ ଏବଂ ଦୁର୍ଲ୍ଲଭ ବିସ୍ମୟୋତ୍ପାଦକ ହସ୍ତୀ, ଅଶ୍ୱ, କୃଷ୍ଣସାର ପ୍ରଭୃତି ନାନାବିଧ ଜନ୍ତୁ ଉପଢୌକନସ୍ୱରୂପ ପଠାଇଥିଲେ । ପାଣ୍ଡ୍ୟରାଜ (କଳିଙ୍ଗ ନଗରର) ସୌନ୍ଦର୍ଯ୍ୟ ବୃଦ୍ଧି ନିମିତ୍ତ ନାନାବିଧ ଆଭରଣ ମଣି ମୁକ୍ତାଦି ରତ୍ନମାନ ଉପହାର ଦେଇଥିଲେ । ଅନେକ ... ... ... ଦମନ କରିଥିଲେ ।

୧୪ । ରାଜତ୍ୱର ତ୍ରୟୋଦଶ ବର୍ଷରେ ସୁପ୍ରବର୍ତ୍ତି ବିଜୟ ଚକ୍ର (୧୯) କୁମାରୀ ପର୍ବତ ବା ଉଦୟଗିରିରେ ଖାରବେଳ ଓ ତାଙ୍କର ଭ୍ରାତା, ଭୃତ୍ୟ, ପୁତ୍ର ଓ ମହିଷୀମାନେ ଅର୍ହତ ବା ଜୈନ ଶ୍ରମଣଙ୍କର ନିବାସ ନିମିତ୍ତ ୧୧୭ଟି ଗୁମ୍ଫା ଖୋଳାଇଥିଲେ ।

---

୧୮—ବାସୁକି—ଏଠାରେ ଏହା ନାଗଜାତୀୟ ନୃପତିମାନଙ୍କୁ ବୁଝାଉଅଛି ।

୧୯—'ସୁପ୍ରବର୍ତ୍ତ ବିଜୟ ଚକ୍ର'ର ଅର୍ଥ 'ବିଜୟୀରାଜ୍ୟ' ବୋଲି ସ୍ଥିର ହୋଇଅଛି । ମଧ୍ୟଯୁଗର ତେଲଗମାନଙ୍କରେ ଆମ୍ଭେମାନେ ବିଜୟ ରାଜ୍ୟ ଶବ୍ଦ ବ୍ୟବହୃତ ଦେଖୁ ।

୧୫ । ଚତୁର୍ଦ୍ଦଶ ବର୍ଷରେ ରାଜା ଖାରବେଳ ଲବ୍ଧପ୍ରତିଷ୍ଠ ଶ୍ରମଣ ଓ ଶତଦିଗାଗତ ଯତି, ତାପସ ଓ ଋଷିମାନଙ୍କ ନିମନ୍ତେ ଗୋଟିଏ ବିଶାଳ ଗୁମ୍ଫା ଖୋଳାଇଥିଲେ । ଏହି ଗୁମ୍ଫାଟି ପାହାଡ଼ର କ୍ରମନିମ୍ନ ପ୍ରଦେଶରେ ଅର୍ହତମାନଙ୍କର ବାସସ୍ଥାନ ବା ସମାଧିସ୍ଥଳ (କାୟନିଷୀଦି) (୨୦) ନିକଟର ଖୋଦିତ ହୋଇଥିଲା । ଏଥିରେ ବା ଏହା ନିକଟରେ ଚତୁର୍ଦ୍ଦିଗରେ ଥିବା ଶ୍ରେଷ୍ଠ ଖଣିମାନଙ୍କରୁ ଖୋଦିତ ୩୫ ଲକ୍ଷ ପଥରଦ୍ୱାରା ଶିଳାସ୍ତମ୍ଭ ଓ ଚୈତ୍ୟମାନ ନିର୍ମାଣ କରିଥିଲେ । ନାନାବର୍ଣ୍ଣ ରଞ୍ଜିତ ଅଗଣାରେ ୭୫ ଲକ୍ଷ ମୁଦ୍ରା ବ୍ୟୟ କରି ବୈଦୁର୍ଯ୍ୟାଚ୍ଛାଦିତ ସ୍ତମ୍ଭମାନ ସ୍ଥାପନ କରିଥିଲେ । ଏକାନ୍ତର ଭାବରେ ବୈଦୁର୍ଯ୍ୟ ଓ ନୀଳଯଷ୍ଟି ଖଚିତ ହୋଇଥିବା ଅର୍ଦ୍ଧଶତ ଚୈତ୍ୟ ସ୍ଥାପନ କରିଥିଲେ ।

୧୬ । ସେ (ଖାରବେଳ) କ୍ଷେମରାଜ (ମଙ୍ଗଳକାରକ), ବର୍ଦ୍ଧରାଜ (ଦାନଶୀଳ), ଇନ୍ଦ୍ରରାଜ (ପରାକ୍ରମଶାଳୀ), ଧର୍ମରାଜ (ନ୍ୟାୟ ଓ ସତ୍ୟପାଳକ), ନିଜର ଦୃଷ୍ଟି, ଶ୍ରୁତ ଓ ଅନୁଭବ ସାହାଯ୍ୟରେ (ପ୍ରଜାମାନଙ୍କର) ହିତକର (୨୧) କାର୍ଯ୍ୟ କରିବାକୁ ଚେଷ୍ଟା କରିଛନ୍ତି । ଖାରବେଳ ନାନାବିଧ ଗୁଣରେ ଭୂଷିତ ଥିଲେ । ସେ ସକଳ ପ୍ରକାର ଧର୍ମାବଲମ୍ବୀମାନଙ୍କର ପୂଜକ ଓ ଆଶ୍ରୟଦାତା ।

---

୨୦—'କାୟନିଷୀଦି'କୁ ସମାଧି ବୋଲି ମଧ୍ୟ କହନ୍ତି । ମଧ୍ୟଯୁଗର ଶିଳାଲେଖ-ମାନଙ୍କରେ ଏହା ସେହି ଅର୍ଥରେ ବ୍ୟବହୃତ ହୋଇଥିବାର ଦେଖାଯାଏ । ଖଣ୍ଡଗିରିରେ ବିଶାଳ ଜୈନ ସମାଧି ଥିବା ଅସମ୍ଭବ ନୁହେଁ ।

୨୧—ଜୈନଶାସ୍ତ୍ର ଅନୁସାରେ କଲ୍ୟାଣ ୫ ପ୍ରକାର—ସମ୍ଭବ, ଜନ୍ମ, ଦୀକ୍ଷା, ଜ୍ଞାନଲାଭ ଓ ମୋକ୍ଷ ।

ସେ ସମସ୍ତ ଦେବମନ୍ଦିରମାନଙ୍କର ସଂସ୍କାରକାରକ ଅଟନ୍ତି । ସେ ଅପ୍ରତିହତ ଚକ୍ରବାହନ ବଳ (୨୨) ଚକ୍ରଧର (୨୩) ଗୁପ୍ତଚକ୍ର, ପ୍ରବର୍ତ୍ତିଚକ୍ର, ରାଜର୍ଷିବଂଶକୁଳ ବିନିସୃତ (୨୪) ମହାବିଜୟୀ ଅଟନ୍ତି ।

## ହାତୀଗୁମ୍ଫା ଲେଖ (ଜୟସ୍ୱାଲଙ୍କ ପାଠ)*

### —ସଂସ୍କୃତାନୁବାଦ—

**ପ୍ରଥମ ଧାଡ଼ି**—ନମୋଽର୍ହଦ୍ଭ୍ୟଃ, ନମଃ ସର୍ବସିଦ୍ଧେଭ୍ୟଃ, ଐଲେନ ମହାରାଜେନ ମହାମେଘ ବାହନେନ ଚୈତ୍ର ରାଜବଂଶ ବର୍ଦ୍ଧନେନ, ପ୍ରଶସ୍ତ ଶୁଭଲକ୍ଷଣେନ ଚତୁରନ୍ତର ଲୁଣ୍ଠ ଗୁଣୋପହିତେନ, କଳିଙ୍ଗାଧି ପତିନା ଶ୍ରୀ ଖାରବେଳେନ ।

**ଦ୍ୱିତୀୟ ଧାଡ଼ି**—ପଞ୍ଚଦଶ ବର୍ଷାଣି ଶ୍ରୀକଡ଼ାର ଶରୀରବତା କ୍ରୀଡ଼ିତାଃ କୁମାର କ୍ରୀଡ଼ାଃ । ତତୋ ଲେଖରୂପଗଣନା-ବ୍ୟବହାର-ବିଧି-ବିଶାରଦେନ ସର୍ବବିଦ୍ୟାବଦାତେନ ନବବର୍ଷାଣି

---

୨୨—ଅପ୍ରତିହତ—ଚକ୍ରବାହନ—ବଳ ଅର୍ଥାତ୍ ଯେ ନିଜର ବିପୁଳ ବାହିନୀ ଏବଂ ମନ୍ତ୍ରୀ ଓ ଅନ୍ୟାନ୍ୟ ରାଜକର୍ମଚାରୀମାନଙ୍କ ଯୋଗୁ ସଂସାରରେ ଅପ୍ରତିହତ ଯୋଦ୍ଧା ବୋଲି ଖ୍ୟାତ । ୨୩—ଚକ୍ରଧର—'ଆଜ୍ଞାଚକ୍ର' ଧାରଣ କରିଥିବା ବ୍ୟକ୍ତି ।

୨୪—ରାଜର୍ଷି ବଂଶକୁଳ ବିନିସୃତ—ଖାରବେଳଙ୍କ 'ଚେଦି' ବା 'ଚେତ୍ର' ବଂଶ ବୈଦିକ ଯୁଗରେ ମଧ୍ୟ ଖ୍ୟାତି ଲାଭ କରିଥିଲେ । ସେହି ପବିତ୍ର ବଂଶରେ ତାଙ୍କ ପୂର୍ବରୁ ଜନକଙ୍କ ତୁଲ୍ୟ ଅନେକ ରାଜର୍ଷି ଅବତୀର୍ଣ୍ଣ ହୋଇଥିଲେ ।

* ଏହା ଅନେକ ସ୍ଥଳରେ ପ୍ରମାଦପୂର୍ଣ୍ଣ ହେଲେ ମଧ୍ୟ ତୁଳନାତ୍ମକ ଆଲୋଚନା ପାଇଁ ଏହାର ଯଥେଷ୍ଟ ଆବଶ୍ୟକତା ଥିବାରୁ ଏହାକୁ ଏଥିରେ ସନ୍ନିବିଷ୍ଟ କରାଗଲା ।

ଯୌବରାଜ୍ୟଂ ପ୍ରଶାସିତମ୍ । ସଂପୂର୍ଣ୍ଣ-ଚତୁର୍ବିଂଶତି-ବର୍ଷ ସ୍ତୁଦାନୀଂ ବର୍ଦ୍ଧମାନ ଶେଷ-ଯୌବନାଭିଜଜସ୍ଯ ତୃତୀୟେ ।

**ତୃତୀୟ ଧାଡ଼ି**—କଲିଙ୍ଗ ରାଜବଂଶେ ପୁରୁଷଯୁଗାୟ ମହା-ରାଜ୍ୟାଭିଷେକଂ ପ୍ରାପ୍ନୋତି । ଅଭିଷିକ୍ତମାତ୍ରଶ୍ଚ ପ୍ରଥମେ ବର୍ଷେ ବାତ-ବିହତଂ ଗୋପୁର-ପ୍ରାକାର-ନିବେଶନଂ ପ୍ରତି-ସଂସ୍କାରୟତି । କଲିଙ୍ଗ-ନଗର୍ଯାଂ ଋଷିଖିବାଜ୍ଞଂ ଋଷିତଲ୍ଲଂ ତଡ଼ାଗପାଲୀଶ୍ଚ ବନ୍ଧୟତି । ସର୍ବୋଦ୍ୟାନ ପ୍ରତି ସଂସ୍ଥାପନଞ୍ଚ କାରୟତି

**ଚତୁର୍ଥ ଧାଡ଼ି**—ପଞ୍ଚତ୍ରିଂଶତ୍ ଶତସହସ୍ରୈଃ ପ୍ରକୃତୀଶ୍ଚ ରଞ୍ଜୟତି । ଦ୍ୱିତୀୟେ ଚ ବର୍ଷେ ଅଚିନ୍ତୟିତ୍ୱା ସାତକର୍ଣ୍ଣିଂ ପଶ୍ଚିମ-ଦେଶଂ ହୟ-ଗଜ-ନର-ରଥ-ବହୁଳଂ ଦଣ୍ଡଂ ପ୍ରସ୍ଥାପୟତି । କୃଷ୍ଣବେଣାଂ ଗତୟା ଚ ସେନୟା ବିତାପୟତି ମୂଷିକନଗରଂ । ତୃତୀୟେ ପୁନର୍ବର୍ଷେ

**ପଞ୍ଚମ ଧାଡ଼ି**—ଗନ୍ଧର୍ବ ବେଦବୁଧୋ (ଦମ୍ପତି) ନୃତ୍ୟ ଗୀତ-ବାଦନ-ସନ୍ଦର୍ଶନୈରୁତ୍ସବସମାଜ-କାରଣୈଶ୍ଚ କ୍ରୀଡ଼ୟତି ନଗରୀଂ । ତଥା ଚତୁର୍ଥେ ବର୍ଷେ ବିଦ୍ୟାଧରାଧିବାସମ୍ ଅହତପୂର୍ବଂ କଲିଙ୍ଗ ପୂର୍ବ-ରାଜ ନିବେଶିତଂ······ବିତଥ-ମକୁଟାନ୍ ସାର୍ଧିତ ବିଲ୍ମାଂଶ୍ଚ ନିକ୍ଷିପ୍ତ-ଛତ୍ର-ଭୃଙ୍ଗାରାନ୍

**ଷଷ୍ଠ ଧାଡ଼ି**—ହୃତରତ୍ନ-ସ୍ୱାପତେୟାନ୍ ସର୍ବ-ରାଷ୍ଟ୍ରିକ-ଭୋଜକାନ୍ ପାଦାବଭିବାଦୟତେ । ପଞ୍ଚମେ ଚେଦାନୀଂ ବର୍ଷେ ନନ୍ଦରାଜେନ ତ୍ରିଶତ ବର୍ଷୀୟାମ୍ ଅବଘଟ୍ଟିତାଂ ତନସୁଲୀୟ-ବାଟାତ୍ ପ୍ରଣାଳୀଂ ନଗରଂ ପ୍ରବେଶୟତି । ସୋ (ପିଚ ବର୍ଷେ) ଷଷ୍ଠେଽଭିଷିକ୍ତଶ୍ଚ ରାଜସୂୟଂ ସନ୍ଦର୍ଶୟନ୍ ସର୍ବକରପଣଂ

**ସପ୍ତମ ଧାଡ଼ି**—ଅନୁଗ୍ରହାନନେକାନ୍ ଶତସହସ୍ରଂ ବିସୃଜତି ପୌରାଯ୍ୟ ଜାନପଦାଯ୍ୟ । ସପ୍ତମଂ ଚ ବର୍ଷଂ ପ୍ରଶାସତୋ ବଜ୍ରଗୃହବତୀ ଧୃଷ୍ଟିରିତି (ଧୃଷି) ଗୃହଣୀ ସନ୍-ମାତୃକପଦ-ପୂର୍ଣ୍ଣା-ସକୁମାର × × × × × × × × ଅଷ୍ଟମେ ଚ ବର୍ଷେ ମହତା ସେନୟା ମହା (ଭିତ୍ତିଂ) ଗୋରଥଗିରିଂ ।

**ଅଷ୍ଟମ ଧାଡ଼ି**—ଘାତୟିତ୍ୱା ରାଜଗୃହମୁପପୀଡ଼ୟତି । ଏତେନ ଚ କର୍ମାବଦାନ ପ୍ରଣାଦେନ ସଂବୀତାଂ ସୈନ୍ୟବାହନାଂ ବିପ୍ରମୋକ୍ତୁଂ ମଥୁରାମପୟାତ ଏବ ନରେନ୍ଦ୍ରୋ (ନାମ) ମୋ······ୟଚ୍ଛତି (ବିଚ୍ଛି) ······ପଲ୍ଲବଭୃତାନ୍ ! ନବମେ ଚ ବର୍ଷେ

**ନବମ ଧାଡ଼ି**— କଳ୍ପବୃକ୍ଷାନ୍ ହୟ-ଗଜ-ରଥାନ୍ ସ ଯନ୍ତୃନ୍ ସର୍ବଗୃହବାସ-ପରିବସନାନ୍ ସାଗ୍ନିଷ୍ଟିକାନ୍ ସର୍ବଗ୍ରହଣଂ ଚ କାରୟିତୁଂ ବ୍ରାହ୍ମଣାନାଂ ଜାତି ପଂକ୍ତିଂ କ୍ରୀ ପରିହାରଂ ଦଦାତି ।

ଅର୍ହତ × × × × × ବ × × × × ନ × × ଗିୟା ।

**ଦଶମ ଧାଡ଼ି**—'କମାନୈଃ' ରାଜସନ୍ନିବାସଂ ମହାବିଜୟ —ପ୍ରାସାଦଂ କାରୟତି ଅଷ୍ଟାତ୍ରିଂଶତ ଶତ ସହସ୍ରୈଃ । ଦଶମେ ଚ ବର୍ଷେ ମହଧୃତାଭି ସମୟୋ ଭାରତବର୍ଷ ପ୍ରସ୍ଥାନଂ ମହୀଜୟନଂ ତ କାରୟତି × × × × (ନିରିତୟା) ଉଦ୍ୟାତାନାଂଚ ମଣିରତ୍ନାନି ଉପଲଭତେ

**ଏକାଦଶ ଧାଡ଼ି**—ଏକାଦଶେ ବର୍ଷେ × × × × ମଣ୍ଡେଚ ପୁର୍ବରାଜ ନିବେଶିତେ ପୃଥୁଦଗ୍ରଦଲ୍ଭ ଲାଙ୍ଗଲେ ନିଷ୍କାସୟତି ଜନପଦ ଭାବନଞ୍ଚ । ତ୍ରୟୋଦଶ-ଶତବର୍ଷୀୟସ୍ୟ କେତୁଭଦ୍ରସ୍ୟ ତିକ୍ତାମର-ଦେହ-ସଂଘାତମ୍ । ଦ୍ୱାଦଶେ ଚ ବର୍ଷେ × × ଭିଃ ବିତ୍ରାସୟତି ଉତ୍ତରାପଥ ରାଜାନ୍

**ଦ୍ୱାଦଶ ଧାଡ଼ି**—ମାଗଧାନାଂ ବିପୁଲଭୟଂ ଜନୟନ୍ ହସ୍ତିନୁ ଗଙ୍ଗାୟାଂ ପ୍ରାୟୟତ । ମାଗଧଂ ରାଜାନଂ ବୃହସ୍ପତିମିତ୍ରଂ ପାଦାବଭିବାଦୟତେ । ନନ୍ଦ ରାଜନୀ ତଂ-କାଳିଙ୍ଗ-ଜିନ-ସନ୍ନିବେଶଂ × × × ଗୃହରତ୍ନାନାଂ ପ୍ରତିହାରୈଃ ଅଙ୍ଗ-ମାଗଧ-ବସୁନ୍ନ ଚ ନାୟୟତ ।

**ତ୍ରୟୋଦଶ ଧାଡ଼ି**— × × × × ତ ଜଠରୋଲ୍ଲିଖିତାନ ବରଣି ଶିଖରାଣି ନିବେଶୟତ ଶତ-ବୈଶିକାନାଂ ପରିହାରେଣ; ଅଦ୍ଭୁତମାଶ୍ଚର୍ଯ୍ୟଂ ହସ୍ତିନାବାଂ ପାରପୁରମ୍ ଉପଦେୟଂ ହୟ-ହସ୍ତି-ରତ୍ନ ମାଣିକ୍ୟଂ **ପାଣ୍ଡ୍ୟରାଜାତ୍** ଇଦାନୀ ଅନେକାନ ମଣି ମୁକ୍ତା ରତ୍ନାନ ଅହାରୟତ ଇହ ଶତଶଃ ।

**ଚତୁର୍ଦ୍ଦଶ ଧାଡ଼ି**— × × × ସିନୋ ବଶୀକରୋତି । ତ୍ରୟୋଦଶେ ଚ ବର୍ଷେ ସୁପ୍ରବୃତ୍ତ-ବିଜୟ-ଚକ୍ରେ କୁମାରୀ ପର୍ବତେଽର୍ହିତେ ଯାପକ୍ଷେମ-ବ୍ୟସଦ୍ଭ୍ୟଃ କାୟିକ ନିଷୀଦ୍ୟାଂ ଯାପ-ଜ୍ଞାପକେଭ୍ୟଃ ରାଜଭୃତ୍ୟା ଶୀର୍ଣ୍ଣବ୍ରତାଃ ବ୍ୟବଶାସିତାଃ ପୂଜା-କୃତୋ-ପାସାଃ ଖାରବେଳେନ ଶ୍ରୀମତା ଶ୍ରୀ ଜୀବଦେବ କଳ୍ପଂ ରକ୍ଷିତାଃ ।

**ପଞ୍ଚଦଶ ଧାଡ଼ି**— × × × × ତାସୁକୃତଂ ଶ୍ରମଣେଭ୍ୟଃ ସୁବହିତେଭ୍ୟଃ ଶାସ୍ତ୍ରଦୃଗ୍‌ଭ୍ୟଃ ଜ୍ଞାନିଭ୍ୟଃ ତପସ୍ୱିଭ୍ୟଃ ସଙ୍ଘାୟାନାମ ଅର୍ହନ୍ନିଷୀଦ୍ୟାଃ ସମୀପେ ପ୍ରାଗ୍‌ଭାରେ ବରାକର ସମୁତ୍ଥାପିତାଭିରନେକ ଯୋଜନାହୃତାଭିଃ ଶିଳାଭିଃ ସିଂହ ପ୍ରସ୍ଥୀୟାୟୈ ରାଜ୍ଞୈ ଧୃଷ୍ଟୈଃ ନିଃଶ୍ରୟାଣି ।

**ଷୋଡ଼ଶ ଧାଡ଼ି**— × × × × ପାଟଳକାର ଚତ୍ୱରେ ଚ ବୈଦୁର୍ଯ୍ୟ ଗର୍ଭାନ୍ ସ୍ତମ୍ଭାନ ପ୍ରତିଷ୍ଠାପୟତ ପଞ୍ଚସପ୍ତତ୍ୟା ଶତ ସହସ୍ରୈଃ ।

ମୁରିୟକାଳଂ ବ୍ୟବଚ୍ଛିନଞ୍ଚ ଚତୁଷଷ୍ଟ୍ୟଗ୍ରଣେତ କାନ୍ତରୀୟ ମୁପାଦୋପୟତି ।
ଖେମରାଜଃସ ବଢ଼ରାଜଃ ସ ଭିଖୁରାଜୋ ଧର୍ମରାଜଃ ପଶ୍ୟନ୍ ଶୃଣ୍ବନ୍ ଅନୁଭବନ୍ କଲ୍ୟାଣାନି ।

**ସପ୍ତଦଶ ଧାଡ଼ି**—ଗୁଣବିଶେଷକୁଶଳଃ ସର୍ବ-ପାଷଣ୍ଡ-ପୂଜକଃ ସର୍ବଦେବାୟତନ ସଂସ୍କାରକାରକଃ ଅପ୍ରତିହତ-ଚକ୍ରି-ବାହିନୀ-ବଳଃ ଚକ୍ରଧରଃ ଗୁପ୍ତଚକ୍ରଃ ପ୍ରବୃତ୍ତ ଚକ୍ରୋ ରାଜର୍ଷି ବଂଶକୁଳ ବିନଃସୃତୋ ମହାବିଜୟୋ ରାଜା ଖାରବେଳ ଶ୍ରୀଃ

---

## ପରିଶିଷ୍ଟ

# ଖାରବେଳଙ୍କ ସମୟ ନିରୂପଣ

କଳିଙ୍ଗ ସମ୍ରାଟ୍ ଭାରତବିଜୟୀ ଖାରବେଳଙ୍କ ପ୍ରଶସ୍ତି ଉଦୟଗିରିର ହାତୀଗୁମ୍ଫା ଲେଖରେ ବର୍ଣ୍ଣିତ ହୋଇଅଛି । ୧୮୨୭ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଡିଭିଜନର କମିଶନର ଷ୍ଟାର୍ଲିଙ୍ଗ ସର୍ବପ୍ରଥମେ ଏହି ଅଦ୍ୱିତୀୟ ଶିଳାଲେଖ ପ୍ରତି ଭାରତର ଐତିହାସିକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । କିନ୍ତୁ ସେ ଏହାକୁ ପଢ଼ିବାକୁ ସମର୍ଥ ହୋଇ ନ ଥିଲେ । ତାଙ୍କ ପରେ ପ୍ରିନ୍‌ସେପ୍, କନିଙ୍ଗହାମ୍, ରାଜେନ୍ଦ୍ରଲାଲ ମିତ୍ର ପ୍ରଭୃତି ପ୍ରତ୍ନତତ୍ତ୍ୱାନ୍ୱେଷୀ ପଣ୍ଡିତମାନେ ଏହି 'ଲେଖ' ପଢ଼ିବା ପାଇଁ ଚେଷ୍ଟା କରିଥିଲେ । କିନ୍ତୁ ସେମାନେ ଆଂଶିକଭାବରେ କୃତକାର୍ଯ୍ୟ ହୋଇଥିଲେ । ରାଜେନ୍ଦ୍ରଲାଲ ମିତ୍ର ଏହାର ସମୟ ନିର୍ଦ୍ଧାରଣ ବା ଖାରବେଳଙ୍କ ନାମ ପର୍ଯ୍ୟନ୍ତ ପଢ଼ିବାକୁ ସମର୍ଥ ହୋଇ ନଥିଲେ । ତାଙ୍କ ମତରେ ଏହା ଅଶୋକଙ୍କ ସମୟର ବା କିଞ୍ଚିତ୍ ପୂର୍ବବର୍ତ୍ତୀ । କିନ୍ତୁ ତାଙ୍କ ମତ ସମ୍ପୂର୍ଣ୍ଣ ଭ୍ରାନ୍ତ ବୋଲି ପ୍ରମାଣିତ ହେଲଣି । ଲେଖ-ବର୍ଣ୍ଣିତ ସାତକର୍ଣ୍ଣି, ଅଙ୍ଗ ମଗଧର ବୃହସ୍ପତି ମିତ୍ର ଅଶୋକଙ୍କ ପରବର୍ତ୍ତୀ । ଏହି ଲେଖରୁ ସ୍ପଷ୍ଟ ଜଣାଯାଏ ଯେ, ସେ ଅଙ୍ଗ ମଗଧର ନନ୍ଦରାଜାଙ୍କ ୩୦୦ ବା ୧୦୩ ବର୍ଷ ପରେ ରାଜତ୍ୱ କରିଥିଲେ । ତେଣୁ ମିତ୍ର ମହାଶୟଙ୍କ ମତ ଗ୍ରହଣୀୟ ନୁହେ । ଉତ୍କଳ ଇତିହାସ ଆଲୋଚନାର ପଥପ୍ରଦର୍ଶକ ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ ମିତ୍ର ମହାଶୟଙ୍କ ମତ ଗ୍ରହଣ କରିଥିଲେ । ଆଧୁନିକ ଐତିହାସିକ-ମାନଙ୍କର ଏଥିପ୍ରତି ଦୃଷ୍ଟି ଦେବା ଉଚିତ ନୁହେ । ମିତ୍ର ମହାଶୟଙ୍କ

ପରେ ଗୁଜୁରାଟର ସ୍ୱନାମଧନ୍ୟ ପଣ୍ଡିତ ଭଗବାନଲାଲ ଇନ୍ଦ୍ରଜୀ ସର୍ବପ୍ରଥମେ ଏହି ବିରାଟ ଶିଳାଲେଖକୁ ପଢ଼ିବା ପାଇଁ ସମର୍ଥ ହୋଇଥିଲେ ଓ ତାହା ଅନେକ ପତ୍ର ପତ୍ରିକାରେ ପ୍ରକାଶ କରିଥିଲେ । ସେ ଭାଷାତତ୍ତ୍ୱ ଓ ବ୍ରାହ୍ମୀ ବର୍ଣ୍ଣମାଳାର କ୍ରମବିକାଶ ଇତ୍ୟାଦି ବହୁ ଗବେଷଣା ସହିତ ଆଲୋଚନା କରି ଏହି ଲେଖଟି ମୌର୍ଯ୍ୟ ସମ୍ରାଟ୍ ଅଶୋକଙ୍କ ପରବର୍ତ୍ତୀ ବୋଲି ସ୍ଥିର କରିଥିଲେ । କିନ୍ତୁ ସେ ଖାରବେଳଙ୍କ ସମୟ ସ୍ଥିର ରୂପେ ନିର୍ଣ୍ଣୟ କରି ପାରି-ନ ଥିଲେ । ତଥାପି ସେ ଏହି ଲେଖ ପାଠ କରି ବିଶେଷ ଖ୍ୟାତି ଅର୍ଜନ କରିଥିଲେ ଓ ତାଙ୍କଠାରେ ଉତ୍କଳ ଏହି ନୂତନ ଅବିଷ୍କାର ପାଇଁ ଋଣୀ । ତାଙ୍କ ପରେ ଆଧୁନିକ ଯୁଗର ଏକତମ ଶ୍ରେଷ୍ଠ ଐତିହାସିକ ସ୍ୱର୍ଗୀୟ କାଶୀପ୍ରସାଦ ଜୟସ୍ୱାଲ୍ ଓ ପ୍ରତ୍ନତତ୍ତ୍ୱ ବିଶାରଦ ସ୍ୱର୍ଗୀୟ ରାଖାଲଦାସ ବାନର୍ଜୀ ୧୯୧୭ରେ ଏହି ଲେଖର ବିସ୍ତୃତ ସମାଲୋଚନା, ବିହୃପାଠ , ଶବ୍ଦାର୍ଥ ଓ ଅନ୍ୟାନ୍ୟ ଐତିହାସିକମାନଙ୍କ ମତ ସହିତ ବିହାର ଉତ୍କଳ ପ୍ରତ୍ନତତ୍ତ୍ୱ ବିଭାଗର ପତ୍ରିକାରେ ପ୍ରକାଶ କରିଥିଲେ । କିନ୍ତୁ ସେମାନେ ମଧ୍ୟ କେତୋଟି ଭ୍ରାନ୍ତ ମତ ପୋଷଣ କରିଅଛନ୍ତି । ଜୟସ୍ୱାଲ୍ ଓ ବାନର୍ଜୀ ଉପଯୁକ୍ତ ପ୍ରମାଣ ନ ପାଇ ମଧ୍ୟ ଖାରବେଳ ସୁଙ୍ଗବଂଶ ପ୍ରତିଷ୍ଠାତା ପୁଷ୍ୟ ମିତ୍ରଙ୍କର ସମସାମୟିକ ବୋଲି ସ୍ଥିର କଲେ । ବାନର୍ଜୀ ମହାଶୟ ସ୍ୱ ପ୍ରଣୀତ ଉତ୍କଳ ଇତିହାସରେ ( History of Orissa Vol. I ) ଏହି ଭ୍ରାନ୍ତ ମତ ପ୍ରଦାନ କରିଅଛନ୍ତି । କିନ୍ତୁ ଏହି ଶିଳାଲେଖଟି ୧୯୧୭ ରେ ପ୍ରକାଶିତ ହେବା ପରେ ଭାରତର ଅନେକ ଐତିହାସିକ ଏହାର ଆଲୋଚନା କରିବାକୁ ଆରମ୍ଭ କଲେ । ଭାରତ

ଇତିହାସରେ ଖାରବେଳ ଅଧ୍ୟାୟ ନୂତନ ହୋଇ ଖୋଲିଗଲା । ସ୍ମିଥ ( Smith ), ମାରସାଲ ( Marshall ) ପ୍ରଭୃତି ଜୟସ୍ୱାଲଙ୍କର ଏହି ଭ୍ରାନ୍ତ ମତ ମଧ୍ୟ ଗ୍ରହଣ କରିଅଛନ୍ତି । କିନ୍ତୁ ବଙ୍ଗଳାର ପ୍ରସିଦ୍ଧ ଐତିହାସିକ ରମାପ୍ରସାଦ ଚନ୍ଦ, ଶ୍ରୀଯୁକ୍ତ ହେମଚନ୍ଦ୍ର ରାୟଚୌଧୁରୀ ଓ କଲିକତା ବିଶ୍ୱବିଦ୍ୟାଳୟର ପାଲି ଅଧ୍ୟାପକ ଶ୍ରୀ ବେଣୀମାଧବ ବରୁଆ ନାନା ଯୁକ୍ତିଦ୍ୱାରା ଜୟସ୍ୱାଲ ଓ ବାନର୍ଜୀଙ୍କ ମତ ଖଣ୍ଡନ କରିଅଛନ୍ତି । ସେମାନେ ଖାରବେଳ ଖ୍ରୀଃ ପୂଃ ପ୍ରଥମ ଶତାବ୍ଦୀର ଲୋକ ବୋଲି ସ୍ଥିର କଲେ । କିନ୍ତୁ ଏମାନଙ୍କ ମତ ମଧ୍ୟ ଅଗ୍ରାହ୍ୟ ବୋଲି ପ୍ରମାଣ କରିବାକୁ ମୁଁ ସାହସ କରିଅଛି । ମୋର ଆଲୋଚନାର ବିଚାରଭାର ଐତିହାସିକମାନଙ୍କ ଉପରେ ପକାଇ ଦେଇ ଅନ୍ୟାନ୍ୟମାନଙ୍କ ଆଲୋଚନା ଏଠାରେ ଲିପିବଦ୍ଧ କଲି ।

ଖାରବେଳଙ୍କ ସମୟ ସ୍ଥିର ରୂପେ ନିର୍ଦ୍ଧାରିତ ନ ହେଲେ ଉତ୍କଳରେ ଜୈନଧର୍ମ ପ୍ରଚାର, ଉତ୍କଳୀୟ ଶିଳ୍ପକଳା ଓ ଲିପିତତ୍ତ୍ୱର ବିକାଶର ଇତିହାସ ସ୍ଥିର ହୋଇ ପାରିବ ନାହିଁ । ଏହା ସହିତ ପ୍ରାଚୀନ କଳିଙ୍ଗ ସାମ୍ରାଜ୍ୟର ଇତିହାସ ଘନିଷ୍ଠଭାବରେ ସଂପୃକ୍ତ । ପଣ୍ଡିତ ନୀଳକଣ୍ଠ ଦାଶ, ସ୍ୱର୍ଗୀୟ ପଣ୍ଡିତ କୃପାସିନ୍ଧୁ ମିଶ୍ର ଓ ଅନ୍ୟାନ୍ୟ ଐତିହାସିକମାନେ ଜୟସ୍ୱାଲଙ୍କ ମତକୁ ନିର୍ବିଘ୍ନରେ ଗ୍ରହଣ କରିଅଛନ୍ତି । କିନ୍ତୁ ଏଥିରେ ମୋର ସନ୍ଦେହ ଜାତ ହେଉଅଛି । ତେଣୁ ଏ ବିଷୟରେ ନୂତନ ତଥ୍ୟ ପାଇବା ପାଇଁ ଚେଷ୍ଟା କରିବା ଆବଶ୍ୟକ । ସମସ୍ତଙ୍କ ମତ ଆଲୋଚନା କରିବା ବର୍ତ୍ତମାନ କ୍ଷେତ୍ରରେ ସମ୍ଭବପର ନୁହେ । ତେଣୁ କେବଳ ଜୟସ୍ୱାଲ, ବାନର୍ଜୀ, ଚନ୍ଦ, ରାୟଚୌଧୁରୀ ଓ ବରୁଆଙ୍କ ମତ ଏଥିରେ

ଅଲୋଚନା କରି ନିଜର ମତ ପ୍ରକାଶ କରୁଅଛୁ । ଏହି ମତ ପ୍ରତିଷ୍ଠିତ ହେଲେ ଉତ୍କଳର ପ୍ରାଚୀନ ଇତିହାସ ସୁଶୃଙ୍ଖଳ ଓ ଧାରାବାହିକ ହେବ ବୋଲି ମୋର ବିଶ୍ୱାସ । ଖାରବେଳଙ୍କ ସମୟ ସମ୍ବନ୍ଧରେ ହାତୀଗୁମ୍ଫା ଲେଖରୁ ନିମ୍ନଲିଖିତ ସୂଚନା ମିଳେ ।

(୧) ସମ୍ପୂର୍ଣ୍ଣ-ଚତୁର୍ବିଂଶତ ବର୍ଷଃ ସଃ ଇଦାନୀଂ ବର୍ଦ୍ଧମାନ-ଶେଷଯୌବନାଭି-ବିଜୟୁ ତୃତୀୟେ କଳିଙ୍ଗରାଜବଂଶେ ପୁରୁଷଯୁଗେ ମହାରାଜାଭିଷେଚନଂ ପ୍ରାପ୍ନୋତି ।

(୨) ଦ୍ୱିତୀୟେ ପୁନଃ ବର୍ଷେ ଅଚିନ୍ତୟିତ୍ୱା ସାତକର୍ଣ୍ଣିଂ...... ଦଣ୍ଡଂ ପ୍ରସ୍ଥାପୟତି ।

(୩) ପଞ୍ଚମେ ଚଦାନୀଂ ବର୍ଷେ ନନ୍ଦରାଜେନ ତ୍ରିବର୍ଷଶତାତ୍ ପୂର୍ବ ମୁଦ୍‌ଘାଟିତଂ ତନସୁଲୀୟ-ବର୍ତ୍ମନଃ ପ୍ରଣାଳୀଂ ନଗରଂ ପ୍ରବେଶୟତି ।

(୪) ଅଙ୍ଗମାଗଧାନାଂ ରାଜ୍ଞଂ ବୃହସ୍ପତିମିତ୍ରଂ ପାଦୌ ବନ୍ଦୟତି । ନନ୍ଦରାଜନୀତିଂ କଳିଙ୍ଗଜୀନାସନଂ ଅଙ୍ଗମଗଧେଭ୍ୟଃ କଳିଙ୍ଗ ମାନୟତି ।

(୫) ମଥୁରାଂ ଉପଗତଃ ଯବନରାଜଂ ।

(୬) ଏକାଦଶମେ ଚ ବର୍ଷେ × × × ପୃଥୁଦକଦର୍ଭନଗରେ ନିଶ୍ୱାସୟତି ଜାନପଦ ଭବନଂ ଚ ତ୍ରୟୋଦଶ-ବର୍ଷ-ଶତକୃତଂ ଭିନତ୍ତି ତମିର ଦ୍ରହଦସଂଖ୍ୟାତଂ ।"

ହାତୀଗୁମ୍ଫା ଲେଖର ସାତକର୍ଣ୍ଣି, ଯବନରାଜ, ବୃହସ୍ପତି ମିତ୍ର ଓ ନନ୍ଦରାଜଙ୍କ ପରିଚୟ ନିରୂପିତ ହେଲେ ଖାରବେଳଙ୍କ ସମୟ

ଅନାୟାସରେ ସ୍ଥିର ହୋଇପାରିବ । ଭାରତର କେତେକ ପ୍ରାଚୀନ ଲେଖର ବ୍ରାହ୍ମୀ ବର୍ଣ୍ଣମାଳା ସହିତ ହାତୀଗୁମ୍ଫା ଲେଖରେ ବ୍ୟବହୃତ ବ୍ରାହ୍ମୀ ବର୍ଣ୍ଣମାଳାର ଅଳ୍ପ ବହୁତ ସାମଞ୍ଜସ୍ୟ ଲକ୍ଷିତ ହୁଏ । ସେମାନଙ୍କ ମଧ୍ୟରୁ କେତେକରେ 'ସାତକର୍ଣ୍ଣି' ଓ 'ବୃହସ୍ପତି ମିତ୍ର'ଙ୍କର ନାମ ମିଳେ ।

(୧) ମଗଧର ବାରବାର ପର୍ବତରେ (ପ୍ରବରଗିରି) ଉକ୍ତ ପର୍ବତର ପ୍ରାଚୀନ ନାମ 'ଗୋରଧଗିରି' ଖୋଦିତ ହୋଇଅଛି । ହାତୀଗୁମ୍ଫା ଲେଖରେ ମଧ୍ୟ 'ଗୋରଧଗିରି'ର ନାମ ମିଳେ । ବାର୍ନର୍ଜିଙ୍କ ମତରେ ଖାରବେଳ ମଗଧ ଆକ୍ରମଣ ସମୟରେ ଏହାକୁ ଲେଖିଥିଲେ । ଏହା ସମ୍ପୂର୍ଣ୍ଣ ସମୀଚୀନ ।

(୨) ସାଞ୍ଚୀତୋରଣ ଲିପିରେ 'ଶ୍ରୀସାତକର୍ଣ୍ଣି'ଙ୍କ ସମୟର ଲେଖ ଯଥା—

"ରାଣୋ ଶିରି ସାତକଣିସ ଅବେସନିସ ବାସିଥିପୁତସ ଅନଂଦସଦାନଂ (ମୂଳଂ)

(୩) ଅଧିଛତ୍ର ରାଜା ଆଷାଢ଼ ସେନଙ୍କର ପୋଭାସ ନାମକ ସ୍ଥାନରୁ ପ୍ରାପ୍ତ ଦୁଇଟି ଲେଖରେ ବହସତମିତ ବା ବୃହସ୍ପତି ମିତ୍ରଙ୍କର ନାମ ମିଳେ । ଆଷାଢ଼ସେନ ବୃହସ୍ପତି ମିତ୍ରଙ୍କର ମାତୁଳ ଥିଲେ ।

(୪) ପୁଷ୍ୟମିତ୍ର ସୁଙ୍ଗଙ୍କର ଅଯୋଧ୍ୟାରୁ ପ୍ରାପ୍ତ ଲେଖ ଯଥା— "କୋଶଳାଧିପେନ ଦ୍ୱିରଶ୍ୱମେଧ ଯାଜିନଃ ସେନାପତେଃ ପୁଷ୍ୟମିତ୍ରସ୍ୟ......ଧର୍ମରାଜ୍ଞଃ ପିତୁଃ ଫଲ୍‌ଗୁଦେବସ୍ୟ କେତନଂ କାରିତଂ (ମୂଳଂ) ।

(୫) 'ନୟୂନିକାପତ୍ତ' ଦକ୍ଷିଣାପଥ ଅଧିପତି ସାତକର୍ଣ୍ଣିଙ୍କର ନାନାଘାଟରେ ଓ ତାଙ୍କର ପିତୃବ୍ୟ କୃଷ୍ଣଙ୍କର ନାସିକ ଗୁମ୍ଫାରେ ଗୋଟିଏ ଲେଖାଏଁ ଶିଳାଲେଖ ଅଛି । ଅକ୍ଷରଗୁଡ଼ିକ ତୁଳନା କଲେ ଏ ସାତକର୍ଣ୍ଣି ସାଞ୍ଚିତୋରଣ ଲିପିର ସାତକର୍ଣ୍ଣିଠାରୁ ପ୍ରାଚୀନତର ବୋଲି ଜଣାଯାନ୍ତି ।

(୬) ଯଶମିତ୍ରାଙ୍କ ଇଷ୍ଟକଲିପି ଯଥା "ଜୀବତ ପୁତାୟେ ରାଜଭରୟାୟେ ବହସତିମିତଧିତୁ ଯଶମତାୟେ 'କାରିତ'" (ମୂଳ) । ଯଶମିତ୍ରା ବୃହସ୍ପତି ମିତ୍ରଙ୍କର କନ୍ୟା ଥିଲେ । ଏହି ଲେଖଟି ମୌର୍ଯ୍ୟ ବ୍ରାହ୍ମୀ ବର୍ଣ୍ଣମାଳାରେ ଲିଖିତ । ଖାରବେଳଙ୍କ ହାତୀଗୁମ୍ଫା ଲେଖରେ ମଧ୍ୟ ମୌର୍ଯ୍ୟଯୁଗର ବ୍ରାହ୍ମୀ ବର୍ଣ୍ଣମାଳାର ଅଧିକାଂଶ ଅକ୍ଷର ବ୍ୟବହୃତ ହୋଇଅଛି । ତେଣୁ ଏହା ଖାରବେଳ ମୌର୍ଯ୍ୟରାଜତ୍ୱର କିଞ୍ଚିତ୍ ପରବର୍ତ୍ତୀ ବା ଶେଷ ସମୟର ବୋଲି ନିଃସନ୍ଦେହରେ ପ୍ରମାଣ କରେ ।

ସ୍ୱର୍ଗୀୟ ଜୟସ୍ୱାଲ ମହାଶୟ ନିମ୍ନଲିଖିତ ପ୍ରମାଣମାନ ଉପସ୍ଥାପିତ କରିଛନ୍ତି—(୧) ମୌର୍ଯ୍ୟସାମ୍ରାଜ୍ୟ ପତନ ପରେ ସେନାପତି ପୁଷ୍ୟ ମିତ୍ରଙ୍କ ଦ୍ୱାରା ସୁଙ୍ଗରାଜତ୍ୱ ଖ୍ରୀ: ପୂ: ୧୮୫ରେ ପ୍ରତିଷ୍ଠିତ ହୋଇଥିଲା । ସେ ବ୍ରାହ୍ମଣ୍ୟ ଧର୍ମର ପ୍ରତିଷ୍ଠା ପାଇଁ ଦୁଇଟି ଅଶ୍ୱମେଧ ଯଜ୍ଞ କରିଥିଲେ ଓ ବିଶେଷ ପରାକ୍ରମଶାଳୀ ଥିଲେ । ସେ ଯବନରାଜ ଡିମେଟ୍ରିୟସଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ । ଜୟସ୍ୱାଲ ସୁଙ୍ଗବଂଶ ପ୍ରତିଷ୍ଠାତା ପୁଷ୍ୟମିତ୍ର ଓ ହାତୀଗୁମ୍ଫା ଲେଖର 'ବହସତି ମିତ' ବା ବୃହସ୍ପତି ମିତ୍ର ଏକ ଓ ଅଭିନ୍ନ ବୋଲି ଗ୍ରହଣ କରିଅଛନ୍ତି । ଏହାର କାରଣ ସ୍ୱରୂପ ସେ ଲେଖିଅଛନ୍ତି,-"Bahasati or Brahaspati

finds mention in the Sankhyayan Gruhyasutra as the presiding deity of the Pusya (ପୁଷ୍ୟ) Constellation of stars.' ସଂଖ୍ୟାୟନ ଗୃହ୍ୟସୂତ୍ରରୁ ସେ ଦୁହେଁ ଏକ ବୋଲି ଥିବାର କୌଣସି ପ୍ରମାଣ ମିଳେ ନାହିଁ । ଏଥିରୁ କେବଳ ଜଣାଯାଏ ଯେ, ପୁଷ୍ୟ ତାରକାପଂକ୍ତିରେ ବୃହସ୍ପତି ଶ୍ରେଷ୍ଠ ବୋଲି ପରିଗଣିତ । କିନ୍ତୁ ଏପରି ଗୋଟାଏ ସାମାନ୍ୟ ତଥ୍ୟ ଉପରେ ନିର୍ଭର କରି ଇତିହାସ ଲେଖିବା ଆଦୌ ଯୁକ୍ତିଯୁକ୍ତ ନୁହେ । ପୁନଶ୍ଚ 'ବୃହସ୍ପତି ମିତ୍ର' ନାମରେ ଅନେକ ରାଜାଙ୍କ ନାମ ମିଳେ ଓ ସେମାନେ ସମସ୍ତେ ଅଙ୍ଗ ମଗଧରେ ମଧ୍ୟ ରାଜତ୍ୱ କରୁଥିଲେ । ଦିବ୍ୟାବଦାନରୁ ଜଣାଯାଏ ଯେ, ଅଶୋକଙ୍କ ନାତି ସଂପ୍ରତିଙ୍କ ପରେ ମୌର୍ଯ୍ୟବଂଶରେ 'ବୃହସ୍ପତି ମିତ୍ର' ମଗଧରେ ରାଜତ୍ୱ କରୁଥିଲେ । ପୁରାଣ-ମାନଙ୍କରୁ ମଧ୍ୟ ମୌର୍ଯ୍ୟ 'ବୃହସ୍ପତି ମିତ୍ର'ଙ୍କର ନାମ ମିଳେ । ମୌର୍ଯ୍ୟ ବ୍ରାହ୍ମୀ ଅକ୍ଷରରେ ଲିଖିତ ଯଶମିତ୍ରାଙ୍କ ଇଷ୍ଟକଲିପିରୁ ଜଣାଯାଏ ଯେ, ସେ ବୃହସ୍ପତି ମିତ୍ରଙ୍କର କନ୍ୟା ଥିଲେ । ଅହିଛତ୍ର ରାଜା ଅଷାଢ଼ ସେନଙ୍କ ପୋଭସା ଲେଖରେ ମଧ୍ୟ ବୃହସ୍ପତି ମିତ୍ରଙ୍କର ନାମ ଦୁଇବାର ଲିଖିତ ହୋଇଅଛି । ଅଷାଢ଼ ସେନ ଉଦକ ନାମକ ରାଜାଙ୍କର ରାଜତ୍ୱର ଦଶମ ବର୍ଷରେ ଗୋଟିଏ ଗୁମ୍ଫା ନିର୍ମାଣ କରିଥିଲେ । ଗୋଟିଏ ମୁଦ୍ରାରେ ମଧ୍ୟ ବୃହସ୍ପତି ମିତ୍ରଙ୍କର ନାମ ମିଳେ । ଏତେ ଗୁଡ଼ିଏ ବୃହସ୍ପତି ମିତ୍ର ଥାଉଁ ଥାଉଁ ଜୟସ୍ୱାଲ୍ ଟାଣି ଓଟାରି ପୁଷ୍ୟ ମିତ୍ର ଓ ବୃହସ୍ପତି ମିତ୍ର ଅଭିନ୍ନ ବୋଲି ପ୍ରମାଣ କରିଅଛନ୍ତି, ଏହା ଆଦୌ ସମ୍ଭବପର ନୁହେ । ହାତୀଗୁମ୍ଫା ଲେଖରେ ବୃହସ୍ପତି ମିତ୍ର ଉପରୋକ୍ତ 'ବୃହସ୍ପତି ମିତ୍ର'ମାନଙ୍କ ମଧ୍ୟରୁ ଜଣେ ବୋଲି ଜଣାଯାଏ । ପୁନଶ୍ଚ

ପୁଷ୍ୟ ମିତ୍ର ବିଶେଷ ପରାକ୍ରମଶାଳୀ ଥିଲେ । ସେ ଉତ୍ତରଭାରତର ଅଧିକାଂଶ ଜୟ୍ କରି ଯବନରାଜକୁ ପରାସ୍ତ କରିଥିଲେ ଏବଂ ନିଜ କ୍ଷମତାର ଚିହ୍ନ ସ୍ୱରୂପ ଦୁଇଟି ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରିଥିଲେ । ଖାରବେଳ ତାଙ୍କୁ ଦୁଇବାର ପରାସ୍ତ କରିବା ଅସମ୍ଭବ ପରି ଜଣାଯାଏ । ତେଣୁ ଜୟସ୍ୱାଲଙ୍କ ଏହି ମତ ଆଦୌ ଗ୍ରାହ୍ୟ ନୁହେ ।

(୨) ହାତୀଗୁମ୍ଫା ଲେଖର ସାତକର୍ଣ୍ଣିଙ୍କୁ ସେ ଅନ୍ଧ୍ର ସାତବାହନ ବଂଶୀୟ ତୃତୀୟ ରାଜା 'ନୟ୍ନିକା ସ୍ୱାମୀ' ସିମୁକ ପୁତ୍ର 'ସମଗ୍ର ଦାକ୍ଷିଣାପଥପତି' ସାତକର୍ଣ୍ଣି ବୋଲି ଗ୍ରହଣ କରିଛନ୍ତି । ତାଙ୍କର ଏହି ମତ ସଂପୂର୍ଣ୍ଣ ସମୀଚୀନ; ଏହା ପରେ ପ୍ରମାଣିତ ହେବ । କିନ୍ତୁ ସେ ୨୦୨ ଖ୍ରୀଷ୍ଟାବ୍ଦରେ ସାତବାହନ ବଂଶ ପ୍ରତିଷ୍ଠିତ ହୋଇଥିବାର ସ୍ଥିର କରି ସାତକର୍ଣ୍ଣିଙ୍କ ରାଜତ୍ୱ ଖ୍ରୀ: ପୂ: ୧୭୨ ନିର୍ଦ୍ଦେଶ କରିଛନ୍ତି; କିନ୍ତୁ ଏହା ପ୍ରାୟ ୨୦।୩୦ ବର୍ଷର ପୂର୍ବବର୍ତ୍ତୀ ଘଟଣା ।

(୩) ସେ ନନ୍ଦରାଜଙ୍କୁ ମହାପଦ୍ମନନ୍ଦ ବୋଲି ସ୍ଥିର କରିଛନ୍ତି । ତାଙ୍କ ମତରେ ହାତୀଗୁମ୍ଫା ଲେଖରେ ୩୦୦ ନନ୍ଦାବ୍ଦ ବ୍ୟବହୃତ ହୋଇଅଛି । ସେ କହନ୍ତି, ମହାପଦ୍ମନନ୍ଦଙ୍କ ପିତାମହ ନନ୍ଦବର୍ଦ୍ଧନ ଖ୍ରୀ: ପୂ: ୪୫୮ ଅବ୍ଦରେ ନନ୍ଦାବ୍ଦ ଚଳାଇଥିଲେ । ତାଙ୍କ ମତର ପୋଷକତା କରିବାପାଇଁ ସେ ଅଲବିରୁନି ଓ ଚାଲୁକ୍ୟରାଜ ଷଷ୍ଠ ବିକ୍ରମାଦିତ୍ୟଙ୍କ ଶିଳାଲେଖରୁ ପ୍ରମାଣ ସଂଗ୍ରହ କରିଅଛନ୍ତି ।

ଏହା ସୁନିଶ୍ଚିତ ଯେ, ହାତୀଗୁମ୍ଫା ଲେଖରେ ନନ୍ଦାବ୍ଦର କୌଣସି ସୂଚନା ନାହିଁ । ଏଥିରେ ସ୍ପଷ୍ଟ ଲେଖା ହୋଇଅଛି ଯେ, "ଖାରବେଳଙ୍କ ରାଜତ୍ୱର ପଞ୍ଚମ ବର୍ଷର ୩୦୦ ବର୍ଷ ବା ୧୦୩ ବର୍ଷ

ପୂର୍ବରୁ ନନ୍ଦରାଜ ତୋଷଲି ବାଟରେ କଳିଙ୍ଗ ନଗରକୁ ଗୋଟିଏ କେନାଲ୍ ଖୋଳାଇଥିଲେ ।" ଏହାକୁ ୩୦୦ ବା ୧୦୩ ନନ୍ଦାବ୍ଦ ବୋଲି ଧରି ସେ ଭ୍ରମରେ ପଡ଼ିଛନ୍ତି । ଭାରତର ପ୍ରାଚୀନ ଅବ୍ଦମାନଙ୍କରେ ନନ୍ଦାବ୍ଦର ନାମ ମଧ୍ୟ ନାହିଁ । ୪୫୮ ଖ୍ରୀ: ପୂ: ରୁ ଯେଉଁ ଅବ୍ଦଟି ପ୍ରଚଳିତ ହୋଇଥିଲା, ତାହା ମାଳବାବ୍ଦ ବୋଲି କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଧୀରେନ୍ଦ୍ରନାଥ ମୁଖୋପାଧ୍ୟାୟ ଅକାଟ୍ୟ ଯୁକ୍ତିମାନ ଦେଖାଇ ପ୍ରମାଣ କରିଅଛନ୍ତି * । ଏହି ମାଳବାବ୍ଦ ମୌଖାରିବଂଶୀୟ ଈଶାନବର୍ମନ୍, ଗୋପରାଜ ଓ ଅନ୍ୟାନ୍ୟ କେତେକ ନୃପତି ସେମାନଙ୍କ ଲେଖମାନଙ୍କରେ ବ୍ୟବହାର କରିଥିଲେ । ଏହା ଆଦୌ ନନ୍ଦାବ୍ଦ ନୁହେ । ଦ୍ୱିତୀୟ କଥା, ସମସ୍ତେ ଜାଣନ୍ତି—ମୌର୍ଯ୍ୟବଂଶ ନନ୍ଦବଂଶ ଧ୍ୱଂସ ପରେ ୩୨୨ ଖ୍ରୀ: ପୂ: ରେ ପ୍ରତିଷ୍ଠିତ ହୋଇଥିଲା । ପୁରାଣ, ଶିଳାଲେଖ, ଜୈନ ଓ ବୌଦ୍ଧ-ଗ୍ରନ୍ଥମାନଙ୍କ ମତରେ ନନ୍ଦବଂଶ ପ୍ରାୟ ୧୦୦ ବର୍ଷ ରାଜତ୍ୱ କରିଥିଲେ । ନନ୍ଦମାନଙ୍କର ୯୧ ବର୍ଷ ରାଜତ୍ୱ 'ଅନନ୍ଦାବ୍ଦ' ବୋଲି ରକ୍ଷଣଶୀଳ ହିନ୍ଦୁମାନଙ୍କଦ୍ୱାରା ପରିଗଣିତ ହେଉଥିଲା । ତାହାହେଲେ ନନ୍ଦମାନେ ୩୨୨+୧୦୦=୪୨୨ ଖ୍ରୀଷ୍ଟପୂର୍ବରୁ ରାଜତ୍ୱ ଆରମ୍ଭ କରିଥିବେ । ସେମାନେ ଖ୍ରୀ: ପୂ: ୪୫୮ ଅବ୍ଦରେ ଅର୍ଥାତ୍ ସ୍ୱ ରାଜତ୍ୱର ୩୬ ବର୍ଷ ପୂର୍ବରୁ ଗୋଟିଏ ଅବ୍ଦ ଚଳାଇଥିଲେ ବୋଲି ଜୟସ୍ୱାଲ କହନ୍ତି; ଏହା ଅତି ବିଚିତ୍ର ଯୁକ୍ତି । ନନ୍ଦମାନେ କ୍ଷତ୍ରିୟକୁଳଧ୍ୱଂସୀ ଓ ନୀଚ

---

* Saka, Gupta, Krita and other Eras by Prof. D. N. Mukherjee. "Modern Review" (June and July—1932).

ବଂଶୋଦ୍ଭବ ବୋଲି ବ୍ରାହ୍ମଣମାନଙ୍କଦ୍ୱାରା ଘୃଣିତ ହେଉଥିଲେ । ବୌଦ୍ଧ ଓ ଜୈନମାନେ ମଧ୍ୟ ସେମାନଙ୍କୁ ଶ୍ରଦ୍ଧା କରୁ ନ ଥିଲେ । ଏପରି ଅବସ୍ଥାରେ ତାଙ୍କର ଅବ୍ଦ କିଏ ଗ୍ରହଣ କରୁଥିଲା ? ଅଲବିରୁନିଙ୍କ ଭାରତ ବିବରଣରେ ନନ୍ଦାବ୍ଦର ସୂଚନା ପର୍ଯ୍ୟନ୍ତ ନାହିଁ । ଚାଲୁକ୍ୟ ରାଜା ୬ଷ୍ଠ ବିକ୍ରମାଦିତ୍ୟଙ୍କ ୟେଡ୍‌ଭରା ଲେଖରୁ ( Yedvara ) ଜଣାଯାଏ ଯେ, ସେ ନନ୍ଦ ଓ ବିକ୍ରମାଦିତ୍ୟଙ୍କଠାରୁ ଅଧିକତର ଯଶ ଓ ଗୌରବ ଲାଭ କରିଥିଲେ । ସେ ଲେଖର ସେହି ଅଂଶର ଇଂରେଜି ଅନୁବାଦ ତଳେ ଦିଆଗଲା—

"Having said why should the glory of Kings Vikramaditya and Nanda be a hindrance any longer he with a loud command abolished that (Era) which has the name of Saka and made that Era which has the Chalukya counting—Bombay Gazetteer, Vol. II, Part II, P. 457

ଏଥିରେ ନନ୍ଦାବ୍ଦର ନାମ ସୁଦ୍ଧା ନାହିଁ; ଶକାବ୍ଦର ନାମ ଅଛି । ଭାରତର ସହସ୍ର ସହସ୍ର ପ୍ରାଚୀନ ଲେଖ ଓ ଗ୍ରନ୍ଥମାନଙ୍କରେ ମାଳବାବ୍ଦ, ବୁଦ୍ଧଙ୍କ ନିର୍ବାଣାବ୍ଦ, ବୀର ସମ୍ବତ୍ (ମହାବୀର), ବିକ୍ରମ-ସମ୍ବତ୍, ଶକାବ୍ଦ, କଳିଯୁଗାବ୍ଦ, ଯୁଧିଷ୍ଠିରାବ୍ଦ ପ୍ରଭୃତି ଅନ୍ୟାନ୍ୟ ଅନେକ ଅବ୍ଦ ବ୍ୟବହୃତ ହୋଇଥିବାର ଦେଖାଯାଏ । କିନ୍ତୁ କୌଣସି ଗୋଟିଏ ଗ୍ରନ୍ଥ ବା ଲେଖରେ ନନ୍ଦାବ୍ଦର ସୂଚନା ପର୍ଯ୍ୟନ୍ତ ମିଳୁନାହିଁ । ହାତୀଗୁମ୍ଫା ଲେଖରେ ମଧ୍ୟ ଏହା ବ୍ୟବହୃତ ହୋଇ ନାହିଁ । ଏଥିରୁ କେବଳ ଏତିକି ଜଣାଯାଏ ଯେ, ଖାରବେଳଙ୍କ

ରାଜତ୍ୱର ୫ମ ବର୍ଷର ୩୦୦ ବର୍ଷ ବା ୧୦୩ ବର୍ଷ ପୂର୍ବରୁ ନନ୍ଦରାଜା କଳିଙ୍ଗରେ ଗୋଟିଏ କେନାଲ ଖୋଳାଇଥିଲେ ।

ଜୟସ୍ୱାଲ ମହାଶୟ ହାତୀଗୁମ୍ଫା ଲେଖର ତ୍ରୟୋଦଶ ଧାଡ଼ିରେ ଥିବା 'ଯେ ବନରଦ'କୁ 'ଯବନରାଜ ଦମିତ' ପାଠକରି ତାଙ୍କୁ ଗ୍ରୀକ୍ ରାଜା ଡେମିଟ୍ରିୟସ୍ ବୋଲି ପ୍ରମାଣ କରିଛନ୍ତି । ତାଙ୍କ ମତରେ ଖାରବେଳ, ଯବନରାଜ ଡେମିଟ୍ରିୟସଙ୍କୁ ପରାସ୍ତ କରିଥିଲେ; କିନ୍ତୁ ଏହା ସତ୍ୟ ନୁହେଁ । କାରଣ ପ୍ରାଚୀନ ଲେଖ, ପୁରାଣ, ସଂହିତା ଓ ଅନ୍ୟାନ୍ୟ ବୌଦ୍ଧଗ୍ରନ୍ଥମାନଙ୍କରୁ ସ୍ପଷ୍ଟ ଜଣାଯାଏ ଯେ, ସୁଙ୍ଗବଂଶ ପ୍ରତିଷ୍ଠାତା ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନକାରୀ ପୁଷ୍ୟମିତ୍ର ଗ୍ରୀକ୍ ବା ମ୍ଳେଚ୍ଛମାନଙ୍କୁ ସଂପୂର୍ଣ୍ଣ ରୂପେ ପରାସ୍ତ କରି ବିଜୟର ଚିହ୍ନ ସ୍ୱରୂପ ବହୁକାଳ ଲୁପ୍ତ ଅଶ୍ୱମେଧଯଜ୍ଞ ଖ୍ରୀ: ପୂ: ୧୭୫ ଅବ୍ଦରେ ଅନୁଷ୍ଠାନ କରିଥିଲେ । ଏହିପରି ଅକାଟ୍ୟ ପ୍ରମାଣ ଥାଉ ଥାଉ କେବଳ ୫ଟି ଅର୍ଦ୍ଧଲୁପ୍ତ ଅକ୍ଷରର ଭ୍ରମପୂର୍ଣ୍ଣ ପାଠ ଉପରେ ନିର୍ଭର କରି 'ଖାରବେଳ ଯବନରାଜଙ୍କୁ ପରାସ୍ତ କରିଥିଲେ' କହିବା ଆଦୌ ସମୀଚୀନ ନୁହେଁ । ସ୍ୱର୍ଗୀୟ ଇନ୍ଦ୍ରଜୀ, ଅଧ୍ୟାପକ ବରୁଆ, କନିଙ୍ଗହାମ୍ ପ୍ରଭୃତି ସମସ୍ତେ ଏହି ୫ଟି ଅକ୍ଷରକୁ 'ଯେବନରଦ' ବୋଲି ପାଠ କରିଅଛନ୍ତି । ଜୟସ୍ୱାଲ ମହାଶୟ ମଧ୍ୟ ପ୍ରଥମେ 'ଯେବନରଦ' ବୋଲି ପାଠ କରିଥିଲେ । ପରେ ଐତିହାସିକ Sten-konow ଙ୍କର ପାଠ ଅବଲମ୍ବନ କରି "ଯବନରାଜ ଦମିତ" ବୋଲି ପଢ଼ିଛନ୍ତି । ଏ ପାଠ ଯେ ସମ୍ପୂର୍ଣ୍ଣ ଭ୍ରାନ୍ତ ଏହା ହାତୀଗୁମ୍ଫା ଲେଖ ବା ତାହାର Estampage ବା ପ୍ରତିଲିପି ଦେଖିଲେ ସ୍ପଷ୍ଟ ଜଣାଯାଏ । ତେଣୁ ଖାରବେଳଙ୍କ ସହିତ 'ଯବନରାଜ ଦମିତ' ବା Demetrious ଙ୍କର

ସଂଘର୍ଷ ଅଦୌ ହୋଇ ନ ଥିଲା ବା ଖାରବେଳ ତାଙ୍କର ସମସାମୟିକ ନୁହନ୍ତି; ବରଂ ତାଙ୍କର ପୂର୍ବବର୍ତ୍ତୀ ଥିଲେ ବୋଲି ପ୍ରମାଣ ମିଳିଲଣି ।

ଶ୍ରୀଯୁକ୍ତ ରମାପ୍ରସାଦ ଚନ୍ଦ ମହାଶୟ ଜୟସ୍ୱାଲଙ୍କ ମତ ଗ୍ରହଣ ନ କରି ଏ ବିଷୟରେ ନୂତନ ଭାବରେ ଆଲୋଚନା କରିଅଛନ୍ତି । ତାଙ୍କ ମତରେ ଲେଖବର୍ଣ୍ଣିତ 'ନନ୍ଦରାଜ' ମହାପଦ୍ମନନ୍ଦ ବା ତାଙ୍କର କୌଣସି ବଂଶଧର ହୋଇ ପାରନ୍ତି । ପୁରାଣ ଓ କିମ୍ବଦନ୍ତୀମାନଙ୍କରୁ ଜଣାଯାଏ ଯେ, ମହାପଦ୍ମ ନନ୍ଦ ସମଗ୍ର ଭାରତ ଜୟ କରି ଓ ଅନେକ ରାଜାଙ୍କୁ ପରାସ୍ତ କରି କ୍ଷତ୍ରିୟକୁଳ ନିଧନ କରିଥିଲେ । ଏହି ମତ ସମ୍ପୂର୍ଣ୍ଣ ସମୀଚୀନ; କାରଣ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ କୁଟିଳମତିଙ୍କ ଚାଣକ୍ୟଙ୍କ ସାହାଯ୍ୟରେ ପାଟଳିପୁତ୍ରର ଶେଷ ନନ୍ଦରାଜାଙ୍କୁ ପରାସ୍ତ କରି ତାଙ୍କ ସାମ୍ରାଜ୍ୟ ଅଧିକାର କରିଥିଲେ । ବଙ୍ଗଳାର ବୁଗୁଡ଼ା ଜିଲାସ୍ଥ ମହାସ୍ଥାନ ଗଡ଼ରୁ ପ୍ରାପ୍ତ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ଲେଖ ଓ ଦାକ୍ଷିଣାତ୍ୟ ପ୍ରଚଳିତ କିମ୍ବଦନ୍ତୀମାନଙ୍କରୁ ସ୍ପଷ୍ଟ ଜଣାଯାଏ ଯେ, ଚନ୍ଦ୍ରଗୁପ୍ତ ଦକ୍ଷିଣରେ କାବେରୀ ନଦୀ ଓ ପୂର୍ବରେ ବ୍ରହ୍ମପୁତ୍ର ନଦୀ ପର୍ଯ୍ୟନ୍ତ ରାଜ୍ୟ ଶାସନ କରିଥିଲେ । ବୋଧହୁଏ ଏ ରାଜ୍ୟଗୁଡ଼ିକ ନନ୍ଦମାନଙ୍କ ଅଧୀନରେ ଥିଲା । ନନ୍ଦମାନେ ପରାସ୍ତ ହେବାରୁ ଚନ୍ଦ୍ରଗୁପ୍ତ ବିଶାଳ ନନ୍ଦ ସାମ୍ରାଜ୍ୟର ଅଧିକାରୀ ହୋଇଥିଲେ । ଚନ୍ଦ ମହାଶୟ ହାତୀଗୁମ୍ଫା ଲେଖର 'ତିବର୍ଷଶତ'କୁ ୩୦୦ ବୋଲି ଅର୍ଥ କରି ଖାରବେଳଙ୍କୁ ଖ୍ରୀ: ପୂ: ୧ମ ଶତାବ୍ଦୀର ବୋଲି ସ୍ଥିର କରିଅଛନ୍ତି; କିନ୍ତୁ ଏହାକୁ ୩୦୦ବର୍ଷ ବୋଲି ଗ୍ରହଣ କରିବା ଅସଙ୍ଗତ । ଏହି ଲେଖର ଅନ୍ୟାନ୍ୟ ସଂଖ୍ୟାବାଚକ ଶବ୍ଦମାନ ଆଲୋଚନା କଲେ

ଏହା ସ୍ପଷ୍ଟ ଜଣାଯାଏ । ଏହି ଲେଖରେ 'ସପ୍ତ-ଦଶ-ଲୟନ-ସତ'ର ଅର୍ଥ ୧୧୭ଟି ଗୁମ୍ଫା, 'ତେରସ-ବସ-ସତ'ର ଅର୍ଥ ୧୧୩ ବର୍ଷ ବୋଲି ଗୃହୀତ ହୋଇଥିବା ସ୍ଥଳେ, 'ତି-ବସ-ସତ'କୁ ୧୦୩ ପରିବର୍ତ୍ତିରେ ୩୦୦ ବର୍ଷ ବୋଲି ଗ୍ରହଣ କରିବା ଆଦୌ ସମୀଚୀନ ନୁହେ । ଅଧ୍ୟାପକ ରାଜେନ୍ଦ୍ର ମଜୁମଦାର ମଧ୍ୟ ଏହି ମତ ପୋଷଣ କରିଅଛନ୍ତି ।

'Ti-basas-ata' and 'Terasa-basa-sata' for 300 and 1300 respectively are grammatically wrong. In the second 'sahasa' for 1000 is not used. Moreover looking at the idiom of the prakrit speeches of the time, we may assert with some certainty that to express 300 years, the expression 'Ti-sata-basani' should have been used without allowing 'basa' to come between 'ti' and 'sata'. (Orissa in the making, page 51 )

ଅଧ୍ୟାପକ ବରୁଆ ଓ ଅନ୍ୟାନ୍ୟ ପାଲିଭାଷାବିତ୍ ପଣ୍ଡିତ-ମାନେ ମଧ୍ୟ ବ୍ୟାକରଣ ଓ ଭାଷାର ଶୈଳୀ ବିଚାର କରି ଏହାକୁ ୧୦୩ ବର୍ଷ ରୂପେ ଗ୍ରହଣ କରିଛନ୍ତି । ସେମାନଙ୍କ ମତରେ ଖାରବେଳ ନନ୍ଦରାଜାଙ୍କର (୧୦୩-୪) ୯୮ ବର୍ଷ ପରେ ରାଜତ୍ୱ ଆରମ୍ଭ କରିଥିଲେ । ତେଣୁ ଚନ୍ଦଙ୍କ ମତ ଗ୍ରାହ୍ୟ ନୁହେ ।

ଚନ୍ଦଙ୍କ ମତରେ ହାତୀଗୁମ୍ଫା ଲେଖର ସାତକର୍ଣ୍ଣି, ଦ୍ୱିତୀୟ ସାତକର୍ଣ୍ଣି । ତାହାର ପ୍ରମାଣ ସ୍ୱରୂପ ସେ କହିଅଛନ୍ତି ଯେ, ଅଶୋକଙ୍କ ଅନୁଶାସନ, ବେଶନଗର ଗରୁଡ଼ସ୍ତମ୍ଭ ଲେଖ ( ୧୫୦ ଖ୍ରୀ: ପୂ: ),

ପ୍ରଥମ ସାତକର୍ଣ୍ଣିଙ୍କ ପତ୍ନୀ ନୟୂନିକାଙ୍କର ନାନା ଘାଟି ଶିଳାଲେଖ, ଦାନଭୂତିଙ୍କ ବରହୁତ ତୋରଣଲେଖ, ହାତୀଗୁମ୍ଫାଲେଖ ଓ ସାତକର୍ଣ୍ଣିଙ୍କ ସମସାମୟିକ ଅନନ୍ଦଙ୍କ ସାଞ୍ଚୀ ତୋରଣଲେଖରେ ବ୍ରାହ୍ମୀ ବର୍ଣ୍ଣମାଳାର କ୍ରମବିକାଶ ଲକ୍ଷିତ ହୁଏ । କିନ୍ତୁ ତାଙ୍କର ଏହି ମତ ସଂପୂର୍ଣ୍ଣ ଭ୍ରାନ୍ତିପୂର୍ଣ୍ଣ ବୋଲି ସ୍ୱର୍ଗୀୟ ରାଖାଲଦାସ ବାନର୍ଜୀ ନାନା ଅକାଟ୍ୟ ଯୁକ୍ତିଦ୍ୱାରା ପ୍ରମାଣ କରିଥିଲେ । ତେଣୁ ଏ ବିଷୟରେ ଅଧିକ ଆଲୋଚନା କରିବା ଅନାବଶ୍ୟକ । ବାନର୍ଜୀ ମହାଶୟ ବହୁ ଗବେଷଣା ଦ୍ୱାରା ପ୍ରମାଣ କରିଛନ୍ତି ଯେ, ହାତୀଗୁମ୍ଫା ଲେଖରେ ପରବର୍ତ୍ତୀ ଯୁଗର କେତେକ ବ୍ରାହ୍ମୀ ଅକ୍ଷର ଦେଖାଗଲେ ମଧ୍ୟ ଏଥିରେ ମୌର୍ଯ୍ୟଯୁଗର ବ୍ରାହ୍ମୀ ବର୍ଣ୍ଣମାଳା ବହୁଳ ପରିମାଣରେ ବ୍ୟବହୃତ ହୋଇଅଛି ।

ଚନ୍ଦ ମହାଶୟ 'ବହ-ସତି-ମିତ'ଙ୍କୁ ଉଦାତ (ସୁଙ୍ଗବଂଶୀୟ ରାଜା) ଓ ଅଷାଢ଼ ସେନଙ୍କ ପରବର୍ତ୍ତୀ ବୋଲି ସ୍ଥିର କରିଅଛନ୍ତି । କିନ୍ତୁ ମୌର୍ଯ୍ୟବଂଶର ଜଣେ ବୃହସ୍ପତି ମିତ୍ର ନନ୍ଦରାଜାଙ୍କର ପ୍ରାୟ ୯୮ ବା ୧୦୦ ବର୍ଷ ପରେ ରାଜତ୍ୱ କରିଥିବାର ଅକାଟ୍ୟ ପ୍ରମାଣ ଥିବାରୁ ଚନ୍ଦଙ୍କର ଏ ମତ ଗୃହୀତ ହୋଇ ନ ପାରେ ।

ବଙ୍ଗଳାର ଅନ୍ୟତମ ଐତିହାସିକ ଶ୍ରୀଯୁକ୍ତ ହେମଚନ୍ଦ୍ର ରାୟ-ଚୌଧୁରୀ ଖାରବେଳ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ରାଜା ବୋଲି ତାଙ୍କ ଗ୍ରନ୍ଥରେ ପ୍ରମାଣ କରିଛନ୍ତି । ଏହା ଯେ ଏକାବେଳକେ ଭିତ୍ତିହୀନ ଏଥିରେ ସନ୍ଦେହ ନାହିଁ । ଯଥା—

(୧) ଗୁପ୍ତାବ୍ଦ ଯେ ବିକ୍ରମ ସମ୍ବତର ନାମାନ୍ତର, ଏହାର ବହୁ ପ୍ରମାଣ ମିଳିଲଣି । କିମ୍ବଦନ୍ତୀ, ଲେଖ ଓ ପୁରାଣମାନଙ୍କରେ

ବର୍ଣ୍ଣିତ ଶକକୁଳ ନିଧନକାରୀ ଭାରତର ବୀରାଗ୍ରଣୀ ଗୁପ୍ତବଂଶୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ ଶକଧ୍ୱଂସର ସ୍ମାରକ ସ୍ୱରୂପ ଖ୍ରୀ: ପୂ: ୫୭ ଅବ୍ଦରେ ବିକ୍ରମସମ୍ବତ୍ ବା ଗୁପ୍ତାବ୍ଦ ପ୍ରଚଳନ କରିଥିଲେ । କାଳିଦାସ ମଧ୍ୟ ତାଙ୍କର ସମସାମୟିକ ବୋଲି ଭିଟାରୁ ପ୍ରାପ୍ତ ସୁଙ୍ଗଯୁଗର 'ଶକୁନ୍ତଳାଚିତ୍ର'ରୁ ଓ ଅନ୍ୟାନ୍ୟ ଐତିହାସିକ ପ୍ରମାଣମାନଙ୍କରୁ ଜଣାଯାଏ । ଖ୍ରୀ: ପୂ: ୫୭ ଅବ୍ଦ ପୂର୍ବରୁ ଦଶାଶ୍ୱମେଧଯାଜୀ ଭାରଶିବମାନେ କାଶୀ ଅଞ୍ଚଳରେ ବିରାଟ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ । ଖ୍ରୀ: ପୂ: ୫୭ ଅବ୍ଦ ପୂର୍ବେ ଶକ ବା କୁଶାନରାଜ କନିଷ୍କ ଏକଛତ୍ରାଧିପତି ଥିଲେ । କନିଷ୍କଙ୍କ ବଂଶଧର ହୁବିଷ୍କ ଓ ବାସୁଦେବ ପ୍ରଭୃତି ସମୁଦ୍ରଗୁପ୍ତଙ୍କ ଦ୍ୱାରା ପରାସ୍ତ ହେବାରୁ ବିକ୍ରମସମ୍ବତ୍ ବ୍ୟବହାର କରିଥିଲେ । କନିଷ୍କ ପ୍ରାୟ ୪୦ ବର୍ଷ ରାଜତ୍ୱ କରିଥିଲେ । ତାହାହେଲେ ପ୍ରାୟ ଖ୍ରୀ: ପୂ: ୧୦୦ ଅବ୍ଦରୁ ବା ତାହାର କିଛି ପରେ ତାଙ୍କର ରାଜତ୍ୱ ଆରମ୍ଭ ହୋଇଥିଲା । କୁଶାନ ବା ଶକମାନେ ମଧ୍ୟ ଉତ୍କଳରେ ଶାସନ କରୁଥିବାର ମୟୂରଭଞ୍ଜ, ସିଂହଭୂମି, ପୁରୀ, ପାରିକୁଦ ପ୍ରଭୃତିରୁ ପ୍ରାପ୍ତ ଦୁଇ ଶତାଧିକ କୁଶାନ ମୁଦ୍ରା ଓ ମାଦଳାପାଞ୍ଜିର ବର୍ଣ୍ଣନାରୁ ଜଣାଯାଏ । ଏ ସମସ୍ତ ପ୍ରମାଣ ବଳରେ ନିଃସନ୍ଦେହରେ କୁହାଯାଇପାରେ ଯେ, ଖାରବେଲ କୁଶାନରାଜ କନିଷ୍କ ବା ଖ୍ରୀ: ପୂ: ୧୦୦ ଅବ୍ଦର ବହୁ ପୂର୍ବବର୍ତ୍ତୀ; ତେଣୁ ସେ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଥିବା ଏକାବେଳକେ ଅସମ୍ଭବ ।

(୨) ରାୟ ଚୌଧୁରୀ ମହାଶୟ ଅନ୍ଧ୍ର ସାତବାହନ ବଂଶ ପ୍ରତିଷ୍ଠାତା ସିମୁକ କାଣ୍ୱବଂଶ ଧ୍ୱଂସ କରି ୨୮ ଖ୍ରୀ: ପୂ: ରେ ରାଜତ୍ୱ

ଅବସ୍ଥ କରିଥିବାର ସ୍ଥିର କରିଅଛନ୍ତି । କିନ୍ତୁ ନୂତନ ଅନୁସନ୍ଧାନ ଦ୍ୱାରା ସ୍ପଷ୍ଟ ଜଣାଗଲଣି ଯେ, ଖ୍ରୀ: ପୂ: ୨୮ ଅବ୍ଦ ବେଳକୁ ମଗଧରେ ଗୁପ୍ତଶକ୍ତି ସମ୍ପୂର୍ଣ୍ଣ ପ୍ରତିଷ୍ଠିତ ହୋଇଥିଲା ଓ ଅନ୍ଧ୍ର ବଂଶର ଶ୍ରେଷ୍ଠ ରାଜା ଶକଶକ୍ତିଧ୍ୱଂସକାରୀ ଗୌତମୀପୁତ୍ର ସାତକର୍ଣ୍ଣି ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ରାଜତ୍ୱ କରୁଥିଲେ । ପୁରାଣମାନଙ୍କ ମତରେ ସେ ସାତବାହନ ବଂଶର ନୟୋବିଂଶ ରାଜା । ତାହାହେଲେ ଉକ୍ତ ବଂଶ ଖ୍ରୀ: ପୂ: ୨୮ ଅବ୍ଦର ବହୁ ପୂର୍ବରୁ ପ୍ରତିଷ୍ଠିତ ହୋଇଥିଲା । ଏପରି ଅବସ୍ଥାରେ ସାତକର୍ଣ୍ଣିଙ୍କୁ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ବୋଲି କହି ସେ ନିଜର ତାର୍କିକ ବୁଦ୍ଧିର ଯଥେଷ୍ଟ ପରିଚୟ ଦେଇଅଛନ୍ତି ସତ୍ୟ, କିନ୍ତୁ ଏହାଦ୍ୱାରା ନିରାଟ ଐତିହାସିକ ସତ୍ୟର ଘୋର ଅପଳାପ ହୋଇଅଛି ।

(ଗ) ଚୌଧୁରୀ ମହାଶୟ ହାତୀଗୁମ୍ଫା ଲେଖର ବୃହସ୍ପତି ମିତ୍ରଙ୍କୁ ମଗଧର 'ନବମିତ୍ର' (Neo Mitra) ବଂଶର ଜଣେ ରାଜା ବୋଲି ଭାବିଅଛନ୍ତି । କିନ୍ତୁ ମଗଧର ଏହି ନବମିତ୍ର ବଂଶ ସମ୍ବନ୍ଧରେ କୌଣସି ଅକାଟ୍ୟ ପ୍ରମାଣ ନ ଥିବାଯୋଗୁ ଏହା ଗ୍ରହଣୀୟ ନହେ । ପ୍ରାଚୀନ ଲେଖମାନଙ୍କରେ ଅନେକ ବୃହସ୍ପତି ମିତ୍ରଙ୍କର ନାମ ମିଳେ । ସମସ୍ତ ବିଷୟ ଚିନ୍ତାକରି ଖାରବେଳଙ୍କ ସମସାମୟିକ 'ବୃହସ୍ପତି ମିତ୍ର'ର ସମୟ ନିର୍ଦ୍ଧାରଣ କରିବା ଆବଶ୍ୟକ । ଏଥିରେ ସ୍ୱେଚ୍ଛାଗ୍ରହିତାର ସ୍ଥାନ ନାହିଁ ।

(ଘ) ସେ ବାରଦଶାର ଶିଶୁନନ୍ଦୀବଂଶୀୟ ସିମୁକ ଓ ଅନ୍ଧ୍ର ସାତବାହନ ବଂଶର ପ୍ରଥମ ରାଜା ସିମୁକ ଏକ ଓ ଅଭିନ୍ନ ବୋଲି ବୃଥା ପ୍ରଯତ୍ନ କରିଅଛନ୍ତି । ଏହା ଯେପରି ହାସ୍ୟାସ୍ପଦ, ସେହିପରି

ଭିତ୍ତିହୀନ । ସେ ନୂତନ ଭାବରେ ଭାରତର ଇତିହାସ ଲେଖିବାକୁ ଯାଇ ପ୍ରମାଣିତ, ସର୍ବଜନଗୃହୀତ ଅକାଟ୍ୟ ଐତିହାସିକ ସତ୍ୟମାନଙ୍କୁ ମଧ୍ୟ ଉପେକ୍ଷା କରିଛନ୍ତି । ତେଣୁ ତାଙ୍କର ମତ ଆଦୌ ଗ୍ରହଣୀୟ ନୁହେ ।

କଲିକତା ବିଶ୍ୱବିଦ୍ୟାଳୟର ପାଲି ଅଧ୍ୟାପକ ଶ୍ରୀଯୁକ୍ତ ବେଣିମାଧବ ବରୁଆ ମହାଶୟ ରାୟ ଚୌଧୁରୀଙ୍କ ମତକୁ ସାମାନ୍ୟ ପରିବର୍ତ୍ତନ କରି ଗ୍ରହଣ କରିଅଛନ୍ତି । ସେ ମଧ୍ୟ ସାତବାହନବଂଶୀୟ ପ୍ରଥମ ରାଜା ସିମୁକ ଖ୍ରୀ: ପୂ: ୨୮ ଅବ୍ଦରେ ରାଜତ୍ୱ କରିଥିବାର ଗ୍ରହଣ କରିଅଛନ୍ତି । ପୁରାଣମାନଙ୍କରୁ ଏତିକି ମାତ୍ର ଗ୍ରହଣ କରାଯାଇପାରେ ଯେ, କାଣ୍ୱବଂଶର ପତନ ସମୟକୁ ଅନ୍ଧ୍ରମାନେ ମଗଧ ପର୍ଯ୍ୟନ୍ତ ଅଧିକାର କରିବାକୁ ଚେଷ୍ଟା କରିଥିଲେ । ତେଣୁ ଖ୍ରୀ: ପୂ: ୨୮ ଅବ୍ଦ କାଣ୍ୱବଂଶର ପତନ ଓ ଅନ୍ଧ୍ରମାନଙ୍କର ଉତ୍ଥାନ ସମୟ ବୋଲି ପରିଗଣିତ ହୋଇପାରେ ।

ହାତୀଗୁମ୍ଫା ଲେଖର 'ନନ୍ଦରାଜ'ଙ୍କୁ ବରୁଆ ମହାଶୟ ଅଶୋକ ବୋଲି ସ୍ଥିର କରିଅଛନ୍ତି । ତାଙ୍କ ମତରେ ଅଶୋକଙ୍କ ପୂର୍ବରୁ କେହି କଳିଙ୍ଗ ଜୟ କରି ନ ଥିଲେ । ଏଥିପାଇଁ ସେ ଅଶୋକଙ୍କ ତ୍ରୟୋଦଶ ଅନୁଶାସନର 'ଅବିଜିତଂ ବିଜିନିତୁଂ' ଓ 'ଅଧୁନା-ଲବ୍ଧେସୁ କଲିଙ୍ଗେସୁ' ଇତ୍ୟାଦି ପଦାବଳୀ ପ୍ରାମାଣ୍ୟ ରୂପେ ଧରିଛନ୍ତି । ତ୍ରୟୋଦଶ ଅନୁଶାସନରେ କୌଣସିଠାରେ ଅଶୋକଙ୍କ ପୂର୍ବରୁ କଳିଙ୍ଗ ଜୟ ହୋଇ ନ ଥିବାର ଆଭାସ ସୁଦ୍ଧା ନାହିଁ । ଏଥିରୁ ଏତିକି ମାତ୍ର ଜଣାଯାଏ ଯେ, ସେ ସର୍ବପ୍ରଥମେ ବିଶାଳ କଳିଙ୍ଗ ରାଜ୍ୟକୁ ନିଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିବା ପାଇଁ

ପ୍ରାୟ ଦୁଇ ବର୍ଷ କାଳ ଭୁମୁଳ ଯୁଦ୍ଧରେ ନିରତ ହୋଇ ବହୁଲକ୍ଷ ଲୋକଙ୍କର ପ୍ରାଣନାଶ କରିଥିଲେ ଓ ପରିଶେଷରେ ଏହାକୁ ନିଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ; ତେଣୁ ତାଙ୍କ ପୂର୍ବରୁ କେହି ଏ ରାଜ୍ୟ ଜୟକରି ନ ଥିଲେ ବୋଲି କହିବା ଅସମ୍ଭବ । ତାଙ୍କ ଗ୍ରନ୍ଥରେ ସେ ମହାଗୋବିନ୍ଦ ସୁତନ୍ତ ବା ସୁତନ୍ତ ଜାତକ ଓ ଶରଭଙ୍ଗ ଜାତକରୁ ଅଶୋକଙ୍କ ପୂର୍ବରୁ କଳିଙ୍ଗର ଇତିହାସ ସମ୍ବନ୍ଧରେ ଉପାଦାନ ସଂଗ୍ରହ କରିଅଛନ୍ତି । ସୁତନ୍ତ ଜାତକରୁ ଜଣାଯାଏ ଯେ, ବହୁ ପ୍ରାଚୀନ କାଳରେ ଦନ୍ତପୁର କଳିଙ୍ଗର ରାଜଧାନୀ ଥିଲା । ଏହା ଅସ୍ମକ, ଅବନ୍ତୀ, ସୌଭିର, ବିଦେହ, ଅଙ୍ଗ ସହିତ କାଶୀ ସାମ୍ରାଜ୍ୟର ଅଧୀନସ୍ଥ ରାଜ୍ୟ ରୂପରେ ଶାସିତ ହେଉଥିଲା । କାଶୀ ସାମ୍ରାଜ୍ୟର ଉତ୍ଥାନ ମଗଧର ଶିଶୁନାଗବଂଶର ଉତ୍ଥାନ ବା ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀର ପୂର୍ବବର୍ତ୍ତୀ । ଶରଭଙ୍ଗ ଜାତକରୁ ଜଣାଯାଏ ଯେ, ଦଣ୍ଡକ ସାମ୍ରାଜ୍ୟର କୁମ୍ଭବତୀ ରାଜଧାନୀ ଥିଲା ଓ କଳିଙ୍ଗରାଜ ଦଣ୍ଡକ-ରାଜଙ୍କର ଅନ୍ତର ରାଷ୍ଟ୍ରାଧିପତି ରୂପରେ ଶାସନ କରୁଥିଲେ । ମହାଭାରତରେ ମଧ୍ୟ ଦନ୍ତପୁର ଓ କଳିଙ୍ଗ ରାଜ୍ୟ ବିଷୟ ବର୍ଣ୍ଣିତ ହୋଇଅଛି * ।

ଏହି ସମସ୍ତ ବିବରଣୀରୁ ସ୍ପଷ୍ଟ ଜଣାଯାଏ ଯେ, ଅଶୋକଙ୍କ ପୂର୍ବରୁ କାଶୀସମ୍ରାଟ୍ ଓ ଦଣ୍ଡକ ସମ୍ରାଟ୍ କଳିଙ୍ଗକୁ ଅଧୀନ ରାଜ୍ୟ ରୂପରେ ଶାସନ କରୁଥିଲେ । ତାହାହେଲେ ଅଶୋକଙ୍କ ପୂର୍ବରୁ କୌଣସି ରାଜା କଳିଙ୍ଗକୁ ଜୟକରି ନ ଥିଲେ ବୋଲି

---

* Old Brahmi inscriptions at Khandagiri and Udayagiri, Page 198 by Prof. B. M. Barua.

କହିବା ସମୀଚୀନ ନୁହେ । ପୁନଶ୍ଚ ରାଜ୍ୟର ସମ୍ପୂର୍ଣ୍ଣ ଅଧିକାର, ସାମୟିକ ଅଧିକାର ଓ ଦିଗ୍‌ବିଜୟ ମଧ୍ୟରେ ଅନେକ ପାର୍ଥକ୍ୟ ଲକ୍ଷିତ ହୁଏ । ବୈଦିକ ଯୁଗରୁ ଭାରତୀୟ ରାଜାମାନେ ଦିଗ୍‌ବିଜୟ ଉଦ୍ଦେଶ୍ୟରେ ବହିର୍ଗତ ହେବାର ପ୍ରଥା ପ୍ରଚଳିତ ଥିଲା । ସେଥିପାଇଁ ରାଜସୂୟ, ବାଜପେୟ ଓ ଅଶ୍ୱମେଧାଦି ଯଜ୍ଞର ସୃଷ୍ଟି । ଐତିହାସିକ ଯୁଗରେ ଖାରବେଳ, ସମୁଦ୍ରଗୁପ୍ତ, ସ୍କନ୍ଦଗୁପ୍ତ, ଯଶୋଧର୍ମନ୍ ଇତ୍ୟାଦି ଅନେକ ଦେଶ ଜୟ କରିଥିଲେ; କିନ୍ତୁ ସେମାନେ ସମସ୍ତ ରାଜ୍ୟ ନିଜ ଅଧୀନରେ ରଖି ପାରି ନ ଥିଲେ । କେବଳ ସେମାନଙ୍କର ଶକ୍ତି ପ୍ରବଳ ଥିବାବେଳେ କେତେକ ରାଜ୍ୟ କିଛିକାଳ ପାଇଁ ଅଧିକାର କରି ପାରିଥିଲେ ।

ସମସାମୟିକ ଦକ୍ଷିଣ କ୍ଷାତ୍ରପ 'ନାହାପନା' ଓ 'ରୁଦ୍ରଦମନ' ପ୍ରଭୃତି ବିକ୍ରମ ସମ୍ବତ୍ ବ୍ୟବହାର କରିଥିଲେ । ସାତବାହନ ବଂଶୀୟ ପ୍ରଧାନ ରାଜା ଗୌତମୀପୁତ୍ର ସାତକର୍ଣ୍ଣି ବିକ୍ରମ ସମ୍ବତ୍ ୪୭ ବା ଖ୍ରୀ: ପୂ: ୧୧ ଅବ୍ଦରେ ଦକ୍ଷିଣ କ୍ଷାତ୍ରପ ନାହାପନାଙ୍କୁ ପରାସ୍ତ କରିଥିଲେ । ଏହି ବିଜୟର ଚିହ୍ନସ୍ୱରୂପ ସେ ନାହାପନାଙ୍କ ମୁଦ୍ରା-ମାନଙ୍କ ତୁଲ୍ୟ ମୁଦ୍ରାମାନ ନିର୍ମାଣ କରିଥିଲେ । ବିଜୟୀ ରାଜା ବିଜିତ ରାଜାର ମୁଦ୍ରାନୁକରଣ କରିବା ପ୍ରଥା ବହୁକାଳରୁ ଭାରତରେ ପ୍ରଚଳିତ ଥିଲା । ପୁନଶ୍ଚ ରୁଦ୍ରଦମନଙ୍କ କନ୍ୟା 'ଦକ୍ଷମିତ୍ରା' ଗୌତମୀପୁତ୍ର ସାତକର୍ଣ୍ଣିଙ୍କ ବାଶିଷ୍ଠୀପୁତ୍ର ପୁଲମାୟିଙ୍କୁ ବିବାହ କରିଥିଲେ । ଗୌତମୀ-ପୁତ୍ରଙ୍କ ରାଜତ୍ୱକାଳ ପ୍ରାୟ ୯ମ ଖ୍ରୀ: ପୂ:ରୁ ଶେଷ ହୋଇଥିଲା ଓ ତାଙ୍କର ରାଜତ୍ୱ ପ୍ରାୟ ଖ୍ରୀ: ପୂ: ୩୦ ଅବ୍ଦରେ ଆରମ୍ଭ ହୋଇଥିଲା । ଗୌତମୀପୁତ୍ର ସାତକର୍ଣ୍ଣି କୋଶଳ ଓ ଉତ୍କଳ ଜୟ କରିଥିଲେ ।

ତାଙ୍କର ସଦ୍ଧର୍ମପଣ୍ଡିତ ମହାଯାନ ଧର୍ମପ୍ରବର୍ତ୍ତକ ନାଗାର୍ଜ୍ଜୁନ ସେ ସମୟରେ ଉତ୍କଳରେ ମହାଯାନ ଧର୍ମ ପ୍ରଚାର କରିଥିଲେ । ଅନେକ ତାମିଲ ଗ୍ରନ୍ଥରେ ଗୌତମୀପୁତ୍ରଙ୍କ କଳିଙ୍ଗ ଓ ଉତ୍କଳ ବିଜୟର ଉଲ୍ଲେଖ ଅଛି । ହୁଏନ୍‌ସାଂଙ୍କ ସମୟ ପର୍ଯ୍ୟନ୍ତ ସାତବାହନ ରାଜତ୍ୱ ଓ ନାଗାର୍ଜ୍ଜୁନଙ୍କ ସ୍ମୃତି କୋଶଳର ଲୋକମାନଙ୍କର ମାନସପଟରୁ ବିଲୁପ୍ତ ହୋଇ ନ ଥିଲା । ଗୌତମୀପୁତ୍ର ସାତକର୍ଣ୍ଣିଙ୍କ ପୂର୍ବରୁ ଉତ୍କଳରେ କୁଶାନମାନେ ରାଜତ୍ୱ କରୁଥିବାର ଆଗରୁ ବର୍ଣ୍ଣିତ ହୋଇଅଛି । ତାହାହେଲେ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଖାରବେଳଙ୍କ ଆବିର୍ଭାବ ଅସମ୍ଭବ । ଗୌତମୀପୁତ୍ର ସାତବାହନ ବଂଶର ଚତୁର୍ବିଂଶ ରାଜା ଥିଲେ । ତାଙ୍କ ପୂର୍ବରୁ ୨୩ ଜଣ ରାଜାଙ୍କର ନାମ ଓ ସମୟ ପୁରାଣମାନଙ୍କରେ ଦିଆଯାଇଅଛି; ଯଥା—(୧)ସିମୁକ ୨୩ ବର୍ଷ ବା ୧୮ ବର୍ଷ, (୨) କୃଷ୍ଣ (ସିମୁକ ଭ୍ରାତା) ୧୦ ବର୍ଷ, (୩) ସାତକର୍ଣ୍ଣି ବା ମାଲକର୍ଣ୍ଣି ୧୦ ବର୍ଷ, (୪) ପୂର୍ଣ୍ଣୋତ୍ସଙ୍ଗ ୧୮ ବର୍ଷ, (୫) ସ୍କନ୍ଦସ୍ତମ୍ଭୀ ୧୮ ବର୍ଷ, (୬) ସାତକର୍ଣ୍ଣି ୫୬ ବର୍ଷ, (୭) ଲମ୍ବୋଦର ୧୮ ବର୍ଷ, (୮) ଅପୀଲକ ୧୨ ବର୍ଷ, (୯) ମେଘସ୍ୱାତି ୧୮ ବର୍ଷ, (୧୦) ସ୍ୱାତି ୧୮ ବର୍ଷ, (୧୧) ସ୍କନ୍ଦସ୍ୱାତି ୭ ବର୍ଷ, (୧୨) ମୃଗେନ୍ଦ୍ର ସ୍ୱାତିକର୍ଣ୍ଣ ୩ ବର୍ଷ, (୧୩) କୁନ୍ତଳ ସ୍ୱାତିକର୍ଣ୍ଣ ୮ବର୍ଷ, (୧୪) ସ୍ୱାତିକର୍ଣ୍ଣ ୧ମ ୧୫ ବର୍ଷ, (୧୫)ପୁଲମାଭି ୧ମ ୩୬ ବର୍ଷ, (୧୬) ଅରିଷ୍ଟକର୍ଣ୍ଣ ୨୫ ବର୍ଷ, (୧୭) ହାଲ ୫ ବର୍ଷ, (୧୮) ମନ୍ତଲକ ୫ ବର୍ଷ, (୧୯) ପୁରିକ ସେନ ୨୧ ବର୍ଷ, (୨୦) ସୁନ୍ଦର ସାତକର୍ଣ୍ଣି ୧ବର୍ଷ, (୨୧) ଚକୋର ସାତକର୍ଣ୍ଣି ½ ବର୍ଷ, (୨୨) ଶିବସ୍ୱାତି ୨୮ ବର୍ଷ ଓ (୨୩) ଗୌତମୀ-

ପୁନ ସାତକର୍ଣ୍ଣି ୨୧ ବର୍ଷ । ତାଙ୍କ ପରେ ୬ ଜଣ ରାଜା ରାଜତ୍ୱ କରିଥିଲେ । କିନ୍ତୁ ଏଠାରେ ସେମାନଙ୍କର ବିବରଣ ଦେବା ନିଷ୍ପ୍ରୟୋଜନ ।

ଗୌତମୀପୁତ୍ରଙ୍କ ପୂର୍ବରୁ ଉକ୍ତ ବଂଶର ତୃତୀୟ ରାଜା, ଷଷ୍ଠ ରାଜା, ଚତୁର୍ଦ୍ଦଶ ରାଜା, ୩ ଜଣ ସାତକର୍ଣ୍ଣି ଥିଲେ । ଉକ୍ତ ବଂଶର ସପ୍ତଦଶ ରାଜା 'ହଳ'ଙ୍କର 'ଗାଥାସପ୍ତସତୀ' ନାମକ ଗ୍ରନ୍ଥରୁ ଜଣାଯାଏ ଯେ, ସେ ବିକ୍ରମ ସମ୍ବତ୍ ପ୍ରବର୍ତ୍ତକ ବିକ୍ରମାଦିତ୍ୟଙ୍କର ସମସାମୟିକ ଥିଲେ । ତାଙ୍କର ସମୟ ଖ୍ରୀ: ପୂ: ୫୭ ଅବ୍ଦ ବୋଲି ଗ୍ରହଣ କରି ପୁରାଣର ରାଜତ୍ୱକାଳମାନ ଯୋଗ କଲେ ସାତବାହନ ବଂଶ ୫୭+୨୯୦=୩୪୭ ଖ୍ରୀ: ପୂ: ରୁ ଆରମ୍ଭ ହୋଇଥିବାର ସ୍ଥିର କରାଯାଇପାରେ । କିନ୍ତୁ ପୌରାଣିକ ଗଣନାମାନ ଭ୍ରମବିହୀନ ନୁହେ ବୋଲି ଅନେକ କ୍ଷେତ୍ରରେ ଦେଖାଯାଏ । ପୁରାଣ ଅନୁସାରେ ଉକ୍ତ ବଂଶର ତୃତୀୟ ରାଜା ସାତକର୍ଣ୍ଣି ଖ୍ରୀ: ପୂ: ୩୧୮—୩୦୮ ପର୍ଯ୍ୟନ୍ତ ଓ ଉକ୍ତ ବଂଶର ଷଷ୍ଠ ରାଜା ସାତକର୍ଣ୍ଣି ୨୭୨—୨୧୬ ଖ୍ରୀ: ପୂ: ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

ପୌରାଣିକ ଗଣନାରେ ଅନ୍ତତଃ ୫୦ ବର୍ଷ ଗୋଳମାଳ ଥିବାର ମନେ କଲେ ଅନ୍ଧ୍ର ବଂଶର ତୃତୀୟ ରାଜା ସାତକର୍ଣ୍ଣିଙ୍କ ସମୟ ୩୧୮-୫୦=୨୬୮ ଖ୍ରୀ: ପୂ: ଓ ଷଷ୍ଠ ରାଜାଙ୍କ ସମୟ ୨୭୨-୫୦=୨୨୨ ଖ୍ରୀ: ପୂ: ବୋଲି ଗ୍ରହଣ କରାଯାଇପାରେ । ଖାରବେଳଙ୍କୁ ଅନ୍ଧ୍ର ସାତବାହନଙ୍କ ବଂଶର ଷଷ୍ଠ ରାଜାଙ୍କ ସମୟର ବୋଲି ମନେ କଲେ ମଧ୍ୟ ତାଙ୍କର ସମୟ ୨୨୨ ଖ୍ରୀ: ପୂ: ହେଉଅଛି ।

